ନାଗର ହସି ଭାଷିଲେ ଗୋ ନବୀନା ଧର୍ମଶାସ୍ତ୍ର କି ଶୁଣା ନାହିଁ ।
ନମସ୍କାର ହସ୍ତକେ ଅଛୁ କାହିଁ ।
ନେଇ ବେନିକର ଶିରେ ଦିଅ ବେଗେ ସ୍ତୁତି ଦୈନ୍ୟ ଭାଷା କହି । ଗୋ ନୂତନା ।
ନାରୀ ଅନାବୃତେ ହସି କହନ୍ତି ।
ନ ଜାଣୁ କେ ଦେବତା ଦେବା ଗତି ।
ନିଖିଳ ଦେବଦେବଙ୍କୁ ଜାଣୁ କହି କଲେ ବହୁତ ପ୍ରଣତି । ସେ ନୂତନା ।୧୭।
ନୟନ ମୁଦିବା ଦେଖି ହସି ହରି ବୋଇଲେ ଶଙ୍କି ନିଅ ବାସ ।
ନଗପତନ ମଣି ନାରୀବଂଶ ।
ନ ଫାଟିଲା ମହୀ, ପଶିବା କାହିଁରେ, ଭାବନା କରି ବିଶେଷ । ସେ ନବୀନା ।
ନଟନାଗର ହଟିଆଶେଖର ।
ନାଟ ସରିବ ଏତେକେ ଭ୍ରମର ।
ନାଟ ଦିଅ କାହିଁ, ଧରାଧରି ହୋଇ ପିନ୍ଧିଲେ ଯେଝା ଅମ୍ବର । ସେ ନବୀନା । ୧୮
ନୟନେ ମିଶାଇ ଲଜ ସ୍ନେହ ଭଙ୍ଗୀ ରଙ୍ଗିମା ଓଷ୍ଠେ ମନ୍ଦ ହାସ ।
ନନ୍ଦସୁତ ମତ୍ତ କଲେ ଉଲ୍ଲାସ ।
ନିର୍ମଳ ପ୍ରେମ ମନ ଜାଣି ତାଙ୍କର ହୋଇଲେ ଗୋବିନ୍ଦ ତୋଷ । ସେ ନାଗର ।
ନୂତନାଙ୍କୁ କହନ୍ତି ମନ୍ଦେ ହସି ।
ନତ ବ୍ରତେ ଅଛ ଯାହା ମନାସି ।
ନିଷ୍ଠା କରିବ ସେ କଥା ଏଥିପାଇଁ ସାକ୍ଷୀ ଏ ମୋହନବଂଶୀ । ଗୋ ନୂତନା ।୧୯
ନବଘନ ଧ୍ୱନି ଶୁଣିଲା ଚାତକୀ ପରାଏ ଗୋପିକା ହୋଇଲେ ।
ନିଜ କରେ କୁସୁମ ମାଳା କଲେ ।
ନେଇ କୃଷ୍ଣଗଳେ ଲମ୍ବାଇ ଆନନ୍ଦେ ହୁଳହୁଳି ଧ୍ୱନି କଲେ ସେ ନୂତନା ।
ନବ ଅନୁରାଗ ଧନ ଅର୍ଜନ ।
ନେଇ କଲେ ପରସ୍ପରେ ସଞ୍ଚନ ।
ନବରଙ୍କୁ ବିଦା ହୋଇଗଲେ ଗୋପୀ କୃଷ୍ଣପାଦେ ରଖି ମନ । ସେ ନାଗର ।୨୦

---

୧୭—ଗତି—ମୁକ୍ତି ଦେବତା । କେ—କିଏ, ନ ଜାଣୁ । ନିଖିଳ ଦେବଦେବ—ସର୍ବଦେବପୂଜ୍ୟଙ୍କ ।

ନଗ ପତନ—ପର୍ବତ ପଡ଼ିବା । ନାରୀବଂଶ—କୁମାରୀ ସବୁ । ମହୀ—ଭୂଇଁ । ନାଟ—ଖେଳ ଓ ବସ୍ତ୍ର । ଅମ୍ବର—ବସ୍ତ୍ର ।

୧୯—ଲଜ ସ୍ନେହଭଙ୍ଗୀ ନୟନରେ ମିଶାଇ ରଙ୍ଗିମା—ଲାଲ, ଓଷ୍ଠରେ ମନ୍ଦହାସ କରି ନନ୍ଦସୁତ ମତ୍ତ ଉଲ୍ଲାସ—ଆନନ୍ଦିତ, କଲେ । ନିଷ୍ଠା—ନିଶ୍ଚୟ ।

୨୦—ନବଘନ ଧ୍ୱନି—ନୂଆ ମେଘ ଗର୍ଜନ । ନବ·····ଅର୍ଜନ—ନୂଆ ଅନୁରାଗରୂପକ ଧନ ରୋଜଗାର କରି ନିଜ ନିଜ ମଧ୍ୟରେ ସଞ୍ଚୟ କରି ରଖିଲେ ।

ନବଘନଶ୍ୟାମ ତ୍ରିଭଙ୍ଗିମଠାଣି ମୁରଲୀମୁଖ ମନୋହର ।
ନଣି ହୃଦେ ଧ୍ୟାନ ହେଉ ମୋହର ।
ନରଖରକ୍ଷକ ନାମ ସାର୍ଥହେଉ ବୋଲେ ସାମନ୍ତସିଂହାର । ହେ ନାଗର ।
ନ ପୂର୍ବାନୁପ୍ରାସରେ ଶେଷ ଛାନ୍ଦ ।
ନାହିଁ କଷ୍ଟ ଅର୍ଥ ଯେନ କୋବିଦ ।
ନଖିଳ-ରସାନନ୍ଦ-ରସ ଅସ୍ୱାଦ କଲେ ପାଇବଟି ସ୍ୱାଦ । ହେ ନାଗର ।୨୧।

— — —

## ଊନବିଂଶ ଛାନ୍ଦ

### ଦ୍ୱିଭଙ୍ଗ ଅନୁପ୍ରାସ

ଦିଶ- ରାଗ ମୁକ୍ତାବଳୀ

ଜଗବାନ୍ଧବ ଲୀଳା ସାଧବ ଜନେ ଶୁଣ ଦେଇ ମନ ।
ଯହୁଁ ସୁମନା ଗଲେ ବିମନା ହେଲେ ଶ୍ରୀନନ୍ଦ-ନନ୍ଦନ । ୧ ।
ଚନ୍ଦ୍ରା ମୂରତି ଚିନ୍ତୁ କରତି ପକାଉଛୁ କାମ ଗୁନ୍ତି ।
ଲଭିବା ଆଶେ ବୁଦ୍ଧି ନ ଆସେ ଚିନ୍ତାଭର ମତି ଅନ୍ତି । ୨ ।
ଏହି କାଳରେ ସେହି ସ୍ଥଳରେ ସବ୍ୟା ସଖୀ ପରବେଶ ।
ଦେଖି ଗୋବିନ୍ଦ ସେ ଅରବିନ୍ଦବଦନାର ହସ ହସ । ୩ ।
ଚନ୍ଦ୍ରା ସଜନୀ ହେବ ରଜନୀକର ମୁଖୀ ବିଚାରିଲେ ।
କୃଶଉଦରୀ କାହା ସୁନ୍ଦରୀ ଏକା ବୁଲୁ ପଚାରିଲେ । ୪ ।

---

୨୧—ତ୍ରିଭଙ୍ଗିମଠାଣି—ବେକ, ଅଣ୍ଟା ଓ ପାଦକୁ ବଙ୍କା କରି ଠିଆ ହେବାର ଶୋଭା । ନରଖରକ୍ଷକ—ଅରକ୍ଷର ରକ୍ଷାକାରୀ । 'ନ' ପୂର୍ବାନୁପ୍ରାସରେ —'ନ' ଅକ୍ଷର ଆଗରେ ଅଛି । ନଖିଳ ରସାନନ୍ଦରସ—ସମସ୍ତ ରସ ଓ ଆନନ୍ଦ ସ୍ୱରୂପ । ଶ୍ରୀକୃଷ୍ଣ—ପ୍ରେମ ସ୍ୱାଦ ପାଇବ ।

— — —

୧—ଜଗବାନ୍ଧବ—ଜଗତର ବନ୍ଧୁ ଶ୍ରୀକୃଷ୍ଣ । ସୁମନା—ସ୍ତ୍ରୀ, ଗୋପ-କନ୍ୟା । ବିମନ—ଦୁଃଖିତ ।

୨—ଚନ୍ଦ୍ରାମୂରତି—ଚନ୍ଦ୍ରାବଳୀ ରୂପ । ଚିନ୍ତାଭର—ଚିନ୍ତାପୂର୍ଣ୍ଣ ।

୩—ଅରବିନ୍ଦ ବଦନାର—ପଦ୍ମମୁଖୀ ସବ୍ୟାର ।

୪—ଚନ୍ଦ୍ରାସଜନୀ—ଚନ୍ଦ୍ରାବଳୀର ସଖୀ । ରଜନୀକରମୁଖୀ—ଚନ୍ଦ୍ରମୁଖୀ ସବ୍ୟାର । କୃଶଉଦରୀ—କ୍ଷୀଣକଟୀ ।

ସଖୀ ହସିଲା ମନ୍ଦେ ଭାଷିଲା ଶୁଣ ହେ ନାଗରବର ।
ରସବିଗ୍ରହ ହୋଇ ନିଗ୍ରହ ଅନୁଗତ ଜନେ କର । ୫ ।
ତୁମ୍ଭ ଆଶାରେ ମଦନଶରେ ଚନ୍ଦ୍ରାବଳୀ ଆସି ସରେ ।
ତବ ଉତ୍ତର ମୋହମନ୍ତ୍ରର ଜାଣିଲୁଁ ଆମ୍ଭ ବିଷରେ । ୬ ।
ଆଶା ଦେଖାଇ ନ ଦେଲେ ଖାଇବାକୁ ଅପରାଧ ସିନା ।
ନ ଥିଲୁ ମଣି ରସିକମଣି ଯୁବତୀ-ପରାଣ-ଘେନା । ୭ ।
ତୁମ୍ଭ କାତର ପ୍ରେମ ଉତ୍ତର ଶୁଣି ଆମ୍ଭେ ବଶ ହେଲୁଁ ।
ଗୁଣବତୀକି ତବ ପ୍ରୀତିକି କେତେମତେ ମଣାଇଲୁଁ । ୮ ।
ବୁଢ଼ୀ ଆକଟ ମହାସଙ୍କଟ ବଟି ବ୍ୟାଧି-ଶାନ୍ତି-ଛଳେ ।
ପଦ୍ମା ବୁଦ୍ଧିରେ ରସନିଧିରେ ଆଣିଅଛୁଁ ବଳେ ବଳେ । ୯ ।
ପୂଜ ଗଉରୀ ଚମ୍ପାଗଉରୀ ବେଗେ ଯିବେ ନିଜ ପୁର ।
ସକଳ ମିତେ ତୁମ୍ଭ ନିମିତ୍ତେ କରିଛୁଁ ଏତେ ବିସ୍ତର । ୧୦ ।
ଉମା ତୀର୍ଥରେ ଅଛନ୍ତି ଖରେ ଜଣାଇଲି ଶ୍ରୀ ଶ୍ରୀମୁରେ ।
ଆଉ ଭରସା ନାହିଁଟି ରସାମୋହିନୀକି ଆଣିବୁଁ ବାରେ । ୧୧ ।
ଶୁଣି ମୋହନ କଣ୍ଠୁ ବହନ ହାର ଉପହାର ଦେଲେ ।
ମୋ ଜୀବଦାନ ଦେଲୁ ନିଦାନ ଆତୁରଛନ୍ଦେ ବୋଇଲେ । ୧୨ ।
ଉଚ୍ଚାର ଜୟେ କରିଲ ବିଜୟେ ସଖୀ ସଙ୍ଗେ ସଙ୍ଗେ ହରି ।
ଉମାବାସରେ ମିଳି ଆଶରେ ବସିଲେ ମୁରଲୀଧାରୀ । ୧୩ ।

---

୫—ରସବିଗ୍ରହ—ରସମୟ ମୂର୍ତ୍ତି । ନିଗ୍ରହ—ଦଣ୍ଡ, ଉପେକ୍ଷା ।

୬—ସରେ—ସରୁଅଛୁ । ତବ ଉତ୍ତର—ତୁମ୍ଭ ଚିଠାଉ । ମୋହନମନ୍ତ୍ରର—ମୋହ କରିବାର ମନ୍ତ୍ର ।

୮—କାତର ପ୍ରେମଉତ୍ତର—କାତରତା ଓ ସ୍ନେହପୂର୍ଣ୍ଣ ଚିଠାଉ ।

୯—ବୁଢ଼ୀ—ଶାଶୁ । ଆକଟ—ଜଗିବା । ମହାସଙ୍କଟ—ବଡ଼ ବିପ୍ଲ । ବଟି—ଠକି । ବ୍ୟାଧିଶାନ୍ତିଛଳେ—ରୋଗ ଭଲ ହେବା କପଟରେ । ପଦ୍ମାବୁଦ୍ଧିରେ—ପଦ୍ମାନାମ୍ନୀ ସଖୀର ବୁଦ୍ଧିରେ । ରସନିଧିରେ-ରସବତୀ ଚନ୍ଦ୍ରାବଳୀଙ୍କୁ ।

୧୦—ଗଉରୀ—ପାର୍ବତୀଙ୍କୁ । ଚମ୍ପାଗଉରୀ—ଚମ୍ପାପରି ଶ୍ୱେତପୀତବର୍ଣ୍ଣା ଚନ୍ଦ୍ରାବଳୀ ।

୧୧—ଆଉ ବାରେ—ଆଉ ଥରେ । ରସାମୋହିନୀ—ପୃଥିବୀ ମୋହନକାରିଣୀ ଚନ୍ଦ୍ରାବଳୀଙ୍କୁ ।

୧୨—ନିଦାନ—ନିଶ୍ଚୟ । ଆତୁରଛନ୍ଦେ—ଉତ୍କଣ୍ଠାରେ ବିହ୍ୱଳ ହୋଇ ।

୧୩—ଉଚ୍ଚାର—କହି । ଉମା ବାସରେ—ଦେବୀଙ୍କର ମନ୍ଦିରରେ । ଆଶରେ—ଆଶାକରି । ୧୪—ଅତି ମୋଦରେ—ଅଧିକ ଆନନ୍ଦରେ ।

ଏଥି କାଳରେ ସଖି ମେଳରେ ବିଜେ କଲେ ଚନ୍ଦ୍ରାବଳୀ ।
ଅତି ମୋଦରେ ଜୟନାଦରେ ସଖୀ ଦେଲେ ହୁଳହୁଳୀ । ୧୪ ।
ଦେଖି ପୁରତେ କାମ ଆରତେ କୃଷ୍ଣତନୁ କମ୍ପମାନ ।
ଅଧୋବଦନେ କମ୍ପି ମଦନେ ଚନ୍ଦ୍ରାବଳୀ ଛନ୍ନ ଛନ୍ନ । ୧୫ ।
ଭ୍ରୁଭ୍ରା ବଚନ କଲ ରଚନ କି ଯୋଗେ ଅଇଲୁଁ ଆଜ ।
ନୋହୁ ଦର୍ଶନ ଉମା ପ୍ରସନ୍ନ ଭେଟିଲୁଁ ରସିକରାଜ । ୧୬ ।
ରମଣୀବର ନଜ ଦେବର ବ୍ରଜରାଜ ସୁତ ସିନା ।
ଛାଡ଼ି ଅନ୍ତର ଚିତ୍ତ ସତର ବୟସୀ ପୂରୁ କାମନା । ୧୭ ।
କରୁଣାକର ଏକାଳେ କର ଧରିକରନ୍ତି ବିନତି ।
ଆରେ ରମଣୀ-ମୁକୁଟମଣି ଯେଉଁ ଏ ଦୀନ ଭଗତି । ୧୮ ।
ଗଜେନ୍ଦ୍ରଗତି ତୋ ବିନା ଗତି ଆନେ ନାହିଁ ମନେ କର ।
ଦେଖା ଦାନରେ ଭାବ ଧନରେ ହୋଇଛୁ କିଣା କଙ୍କର । ୧୯ ।
ସଖୀ ଚତୁରବର ଆତୁର ଜାଣିନ୍ତେ ଅନ୍ତର ହେଲେ ।
ସେହୁ ଦମ୍ପତି ସୁଖସମ୍ପତି ବୃଷ୍ଟି ହେଲ ବର୍ଷିଲେ । ୨୦ ।
ସଙ୍କେତକୁଞ୍ଜେ ଆନନ୍ଦପୁଞ୍ଜେ ବିଜେ କୋଳେ ଯେନି ହରି ।
ରାମା ଡରଇ ତନୁ ଥରଇ ନବ ଅନୁଭବୁଁ କରି । ୨୧ ।
କରକ ବୁକେ କର ଚିବୁକେ ଦେଇ ଗୃହ୍ନି ଆରମ୍ଭିଲେ ।
ଘନଶ୍ୟାମ ତ ମୋର ଯାମନ୍ତ ପାନ ଅଭିମନ୍ୟୁ ବୋଲେ । ୨୨ ।
ପ୍ରସଙ୍ଗାର୍ଥରେ ରସ ଏଥରେ ନୋହିଲା ଅତି ରଞ୍ଜନ ।
ଧର୍ମଜ୍ଞ ଧୀରେ ଯେନ ହେ ଧୀରେ ଦ୍ୱିଭଙ୍ଗୀ ଯମକ ସ୍ଥାନ । ୨୩ ।

---

୧୫ । ଆରତେ—ପୀଡ଼ାରେ, ଆର୍ତ୍ତିରେ । ୧୭—ଅନ୍ତର ଚିତ୍ତ—ମନର ଭେଦ ବୁଦ୍ଧି ।

୧୯ । ଦେଖାଦାନରେ—ଦେଖାହେବା ଦାନରୁ । ଭାବଧନରେ—ଭାବ-ଭଙ୍ଗୀରୂପକ ଧନଦ୍ୱାରା ।

୨୦—ଚତୁରବର—ଚତୁର ଶ୍ରେଷ୍ଠ ଶ୍ରୀକୃଷ୍ଣଙ୍କର । ଆତୁର—ଉତ୍କଣ୍ଠା । ଅନ୍ତର ହେଲେ—ଗୁଲିଗଲେ ।

୨୧—ଆନନ୍ଦପୁଞ୍ଜେ—ଆନନ୍ଦସମୂହରେ । ୨୨—କରକ—ଗୋଟିଏ ହାତ ।

୨୩—ପ୍ରସଙ୍ଗାର୍ଥରେ—ମିଳନ ପ୍ରସଙ୍ଗ ବର୍ଣ୍ଣନରେ । ରଞ୍ଜନ—ମନୋହର । ଧର୍ମଜ୍ଞଧୀରେ—ତତ୍ତ୍ୱଜ୍ଞପଣ୍ଡିତମାନେ । ଧୀରେ—ବୁଦ୍ଧିରେ ।

## ବିଂଶତି ଛାନ୍ଦ

## କୃଷ୍ଣଙ୍କ ଚନ୍ଦ୍ରାବଳୀଙ୍କୁ ଗୁହାରି

ନିୟମ ଯମକ । ବାଣୀ-କଳଗା

ଧୀରେ ଧୀରେ ଧୀରେ ହେନ ଏଥି ଦେଇ ଶ୍ରୁତି ।
ଧର ଧର ଧରଣୀଶୋଭୀଙ୍କ କହୁଛନ୍ତି ଯେ । ୧ ।
ଶତ ଶତ ଶତକୋଟି ଘାତ ଜାତ ଶର ।
ବାର ବାର ବାରଣଗମନା ମାରେ ମାର । ୨ ।
ଥର ଥର ଥରଇ ଥରକୁ ଥର ଅଙ୍ଗ ।
କର କରକରଦନା ମୋର ଦର ଭଙ୍ଗ । ୩ ।
ସୁର ସୁର ସୁରସଦା ଥିଲେ ସେ ନାହାନ୍ତି ।
ଭାବ ଭାବ ଭାବବତୀ ବିନା କେ ମୋ ଗତି । ୪ ।
ଜୀବଞ୍ଜୀବ ଜୀବ ଦୁଃଖୀ ବିଚନ୍ଦ୍ରେ ଯେମନ୍ତ ।
ଜୀବ ଯିବ ଜୀବନଜନେତ୍ରା ତେମନ୍ତ । ୫ ।

---

୧—ଧୀରେ—ଆହେ ପଣ୍ଡିତମାନେ । ଧୀରେ—ବୁଦ୍ଧିରେ । ଧୀରେ—ସ୍ଥିରଭାବେ । ଶ୍ରୁତି—କାନ । ଧରଧର—ଗୋବର୍ଦ୍ଧନ ପର୍ବତଧାରୀ କୃଷ୍ଣ । ଧରଣୀଶୋଭୀ—ଭୂମଣ୍ଡନା ଚନ୍ଦ୍ରାବଳୀକୁ ।

୨—ବାରଣଗମନା—ହେ ଗଜଗମନା । ମାର—କନ୍ଦର୍ପ । ଶତଶତ—ଶଏ ଶଏ । ଶତକୋଟି ଘାତଜାତ ଶର—ବଜ୍ରପ୍ରହାର ପରି ପ୍ରହାର ଜାତ କରୁଥିବା କାଣ୍ଡମାନଙ୍କୁ । ବାରବାର—ବାରଂବାର ମାରୁଅଛି ।

୩—ଅଙ୍ଗ ଥରକୁ ଥର—ବାରମ୍ବାର, ଥରଥର ହୋଇ ଥରଇ । ହେ କରକରଦନା—ଡାଳିମ୍ବବୀଜ ପରି ଦାନ୍ତ ଯାହାର ସେ । ମୋର ଦରଭଙ୍ଗ—ଭୟନାଶ, କର ।

୪—ହେ ସୁରସଦା—ରତିଦାୟିନୀ; ସୁର ସୁର—ମହାଦେବ, ଥିଲେ କିନ୍ତୁ ସେ ନାହାନ୍ତି । ସେ ଥିଲେ କନ୍ଦର୍ପକୁ ପୋଡ଼ିଥାନ୍ତେ, କିନ୍ତୁ ଭାବବତୀ—ଅନୁରାଗିଣୀ ତୁମ୍ଭ ଭାବ-ପ୍ରୀତି, ବିନା ମୋର କିଏ ଗତି—ଆଶ୍ରୟ, ଅଛି ଭାବ—ଭାବନାକର, କିମ୍ବା ଭାବ ଭାବ—ଭାବନା କର କର (ସମ୍ଭ୍ରମରେ) ।

୫—ଯେମନ୍ତ ବିଚନ୍ଦ୍ରେ—ଚନ୍ଦ୍ର ନ ଥିଲେ, ଜୀବଂଜୀବ—ଚକୋରର, ଜୀବ—ପ୍ରାଣ, ଦୁଃଖୀ ହୁଏ ତେମନ୍ତ ହେ ଜୀବନଜନେତ୍ରା—ପଦ୍ମନେତ୍ରା, ମୋର ପ୍ରାଣ ଯିବ । ଜୀବ—ଜଳ ।

ସର ସରସର ଆଶାସ୍ପୀ ମୁଁ ମୀନବତ ।
ଘନ ଘନ ଘନରସଦାୟିନୀର ରତ । ୬ ।
ମନ ମନମନ ଧ୍ୱନି ଶ୍ରବଣେ ଇଚ୍ଛଇ ।
ଆନ ଆନ ଆନନେ ବନ୍ଧିଛୁ କାହିଁପାଇଁ । ୭ ।
କନ କନ କନକାଙ୍ଗୀ ମୃଗୀ ପରି ମୁହିଁ ।
ଦର ଦର ଦରକଣ୍ଠି ଗୁଣକୁ ନ ବହି । ୮ ।
ଜରଜର ଜର ଅନ୍ତ ସ୍ୱେଦ ପରି ତନୁ ।
ଝର ଝର ଝରଇ ତ ଲୋତକ ନୟନୁଁ । ୯ ।
ତର ତର ତରଳାକ୍ଷୀ ହାସ ଦେଖିବାରେ ।
ବଧୂ ବନ୍ଧୁ ବଧୂଲୀଅଧରୀ କପାଁ ମୋରେ । ୧୦ ।
ସାର ସାର ସାର ସାକ୍ଷିକୁଚ ଜାନୁ ପାଲି ।
ବନ୍ଧି ବନ୍ଧି ବନ୍ଧିତେ ଦେଉଛି ଖେଳ ବୋଲି । ୧୧ ।

---

୬—ତୁ ସରସର ସର—ଜଳପୂର୍ଣ୍ଣ ପୁଷ୍କରଣୀ ପରି ରସର ପୁଷ୍କରଣୀ ଅଟୁ, ମୁଁ ମୀନବତ—ମାଛପରି, ଆଶାସ୍ପୀ—ଆଶା କରିଅଛି । ଘନରସଦାୟିନୀର—ନବଜ ରତିଦାୟିନୀ, ତୁମର ରତ—ସମ୍ଭୋଗ, ଘନ ଘନ—ସାନ୍ଦ୍ର ମେଘ, ହୋଇଅଛି କମ୍ବା ଘନ ଘନ ସର୍ବଦା ରତରେ ଆଶାସ୍ପୀ ।

୭—ମୋର ମନ ତୁମ୍ଭର ମନ ମନ ଧ୍ୱନି—ସୁରତ କାଳୀନ ଗଦଗଦ ଶବ୍ଦ, ଶ୍ରବଣେ—ଶୁଣିବାକୁ, ଇଚ୍ଛା କରିଅଛି । ଆନନେ—ମୁହଁରେ, ଆନଆନ—ଅନ୍ୟ ଅନ୍ୟ, କଥା କାହିଁପାଇଁ ବନ୍ଧିଅଛୁ ।

୮—ହେ କନକାଙ୍ଗୀ—ସୁନାଗୋରୀ, ମୃଗୀ ପରି କନ କନ—ଛନ ଛନ, ହୁଅ ନାହିଁ । ହେ ଦରକଣ୍ଠୀ—ଶଙ୍ଖରୂପ କଣ୍ଠ ଯାହାର, ଦର—ଅଳ୍ପ ଦର ଗୁଣକୁ—ଭସ୍ମକୁ, ବହ ନାହିଁ କମ୍ବା ଦର ଦର ଗୁଣକୁ—ଅଳ୍ପ ଶଙ୍ଖ ଗୁଣକୁ ବହ ନାହିଁ । ଶଙ୍ଖ ଯେପରି ବାହାର ସଫା ଓ ଅନ୍ତରରେ କୁଟିଳ ସେପରି ଅନ୍ତରରେ ରଖ ନାହିଁ ।

୯—ମୋର ତନୁ—ଦେହ; ଜରଅନ୍ତ ସ୍ୱେଦ—ଜ୍ୱର ଶେଷ ଝାଳ, ପରି ଜର୍ଜ୍ଜର ହୋଇଅଛି ।

୧୦—ତରଳାକ୍ଷୀ—ଚଞ୍ଚଳନୟନା । ତୁମ୍ଭର ହସ ଦେଖିବାକୁ ମୁଁ ତର ତର—ଉତ୍ସୁକ ଅଛି । ବଧୂଲୀ—ଫୁଲପରି ଓଠ ଯାହାର, ହେ ବନ୍ଧୁ ମୋରେ—ମୋତେ, କପା ବଧୂ—ବଧ କରୁଅଛୁ ।

୧୧—ହେ ସାରସାକ୍ଷି—ପଦ୍ମନୟନା, ତୁମ୍ଭର କୁଚ—ସ୍ତନ, ସାର ସାର—ଉତ୍କୃଷ୍ଟ ପଶାସାର, ଏ ଜାନୁ—ଜଙ୍ଘ, ପଶାପାଲିକୁ ବନ୍ଧି ବନ୍ଧିତେ—ଉଚିତ ରୂପରେ, ଖେଳବୋଲି ବନ୍ଧିଅଛୁ—କରିଅଛୁ ।

ଦାନ ଦାନ ଦାନଦକ୍ଷ ହୋଇ ସୁଖୀ ହୁଅ ।
ମାନ ମାନ ମାନଧପଣାକୁ ଫିଙ୍ଗି ଦିଅ । ୧୨ ।
ତାର ତାର ତାରପତିମୁଖ ଟେକ ମିତ ।
ଗର ଗର ଗରକଣ୍ଠପର କଲନ ତ । ୧୩ ।
ଆନ ଆନ ଆନନକୁ ନ ରସେ ମୋ ମନ ।
ହର ହର ହରମନ ନେଉଛୁ ତୋ ମାନ । ୧୪ ।
ଶୁଚ ଶୁଚ ସୁଚୀରକୁ ଦେଇ ଦାନ କର ।
ଚନ୍ଦ୍ରା ଚତା ଚନ୍ଦ୍ରାମଣି ରସ ଢାଳ ହର । ୧୫ ।
ଯାର ଯାର ଜାରପ୍ରୀତ ତାର କ ଏ ସ୍ଥିତ ।
ଅନା ଅନା ଅନାସ୍ଥରେ କମ୍ପୁଛୁ ମୋ ଗ୍ରୁତ ।୧୬।
ଭାଷ ଭାଷ ଭାଷଇଁ ନ ଭାସଇଁ ସୁମନା ।
ସରୁ ସରୁ-ସରୂପା-କୃପାରେ ମୋ ବେଦନା । ୧୭ ।

---

୧୨—ହେ ଦାନଦକ୍ଷ—ଦାନଶୀଳା, ତୁମ୍ଭେ ପଣା ଦାନ ପକାଇଲ ପର ଦାନହୋଇ—ଦଆହୋଇ, ସୁଖୀ ହୁଅ । ମୋ ବଚନ ମାନ; ମାନ ମାନଧ ପଣାକୁ—ମାନରୂପକ ପଣାକୁ (ଅଭିମାନ, ଫିଙ୍ଗିଦଅ) । ଅଥବା ମାନ ମାନ—ମୋ କଥା ଘେନ ଘେନ ।

୧୩—ହେ ମିତ, ତାର—ଉଜ୍ଜ୍ୱଳ, ତାରପତିମୁଖ—ଚନ୍ଦ୍ରମୁହଁକୁ, ଟେକ ମୋତେ ତାର—ଉଦ୍ଧାର କର କମ୍ବା ତାର ତାର—ଉଦ୍ଧାର କର କର । ଗରକଣ୍ଠ ପର—ଶିବଙ୍କ ଶତ୍ରୁ କାମ, ମୋତେ ଗରଗର କଲଣି, ଅସ୍ତବ୍ୟସ୍ତ ବା ଖଣ୍ଡ ଖଣ୍ଡ ।

୧୪—ଆନ—ପ୍ରାଣ ଅଛୁ । ମୋ ମନ ଆନ ଆନନକୁ—ଅନ୍ୟ ମୁହଁକୁ, ରସୁ ନାହିଁ । ହେ ହର ! (ନାସ୍ତିକେ) ତୋ ମାନ—ଅଭିମାନ, ହର—ଶ୍ରୀକୃଷ୍ଣ ମୋର ମନକୁ ହର ନେଉଅଛୁ କମ୍ବା ହେ ହର ନାସ୍ତିକେ ତୋହର ହର—ଶୋଭା ।

୧୫—ସୁଚୀରକୁ—ହୀନ ବସନକୁ ବା ବଲମ୍ବକୁ ଗ୍ରୁଡ଼ ଶୁଚ ଶୁଚ—ବିଶୁଦ୍ଧ ଶୃଙ୍ଗାର ରସକୁ, ଦଅ ବା ହେ ଶୁଚ—ଶୁଦ୍ଧେ । ହେ ଚନ୍ଦ୍ରାମଣି—ବାଞ୍ଛିତଦାୟିନୀ, ରସ—ପ୍ରୀତିରୂପକ ଜଳ, ଢାଳ ମୋର ଚନ୍ଦ୍ରାରୂପକ ଚତା—ଅଗ୍ନି କୁ ହରଣ କର ।

୧୬—ଜାରପ୍ରୀତ—ପରପୁରୁଷ ସହିତ ପ୍ରୀତି । ଅନାଅନା—ଗୃହଁ ଗୃହଁ ।

୧୭—ହେ ସୁମନା—ମନସ୍ୱିନ, ଭାଷ ଭାଷ—କଥା କୁହ, ଭାଷଇ—କହୁଅଛୁ, ଯେପରି ଆଉ ମୁଁ ଭାସି ନ ଯାଏ କମ୍ବା ମୁଁ କହ କହ କହୁଅଛୁ, ହେ ସୁମନା, ତୁମ୍ଭେ ଭାସୁ—କହୁଁ ନାହଁ । ହେ ସରୁସରୂପା—କୃଶାଙ୍ଗି, ତୋ କୃପାରେ—ଦୟାଦ୍ୱାରା, ମୋ ବେଦନା ସରୁ—ଯାଉ ।

ଉରୁ ଉରୁ ଉରୁବଶୀ ନସ୍ତ ପରିବନ୍ଧେ ।
ହୁଁ ହୁଁ ହୁଁ ହୁଁ ହୁଁ ହୁଁ ଗାନେ କରି ଅବରୋଧେ ।୧୮।
ରସ ରସ ରସନା ବଜାଇ ମୋତେ କିଣ ।
ବଳା ବଳା ବଳାରାତି ହେବ ଏକ୍ଷଣ । ୧୯ ।
ଧନ ଧନ ଧନ ପତି ସିଦ୍ଧି କେଉଁ ବର ।
ନାକ ନାକ ନାକଲ ଭଙ୍ଗୀରେ ହେବ ଚୂର । ୨୦ ।
ନାଗ ନାଗ ନାଗବନ୍ଧ ହେଲେ ଭାଜିଯିବ ।
ମାନ ମାନ ମାନବର ଦେଖି କି ରହିବ । ୨୧ ।
ହାରେ ହାରେ ହାରେ ବନ୍ଧୁ ଛନ୍ଦହି ପ୍ରୀତିରେ ।
ଭିନ୍ନ ଭିନ୍ନ ଭିନ୍ନକଳାକେଶି କରି କି ରେ । ୨୨ ।
ଧରାଧରା ଧରାପରା କହୁଁ ଏ ବିଧିରେ ।
ଗୁଣି ଗୁଣି ଗୁଣୀମଣି ଶୁଣି ଗୁହ୍ନିଁ ଧୀରେ ।୨୩।

---

୧୮—ହେ ଉରୁ ଉରୁବଶୀ—ବଡ଼ ଉର୍ବଶୀ ! ପରିବନ୍ଧେ—ସୁରତ ବନ୍ଧରେ, ଉରୁ—ଜଙ୍ଘକୁ ନସ୍ତଅ । କିମ୍ବା ହେ ଉର୍ବଶୀ ! ଉରୁ—ବଡ ଉରୁକୁ··· ବା ଉରୁରେ ବସି··· । ଅବରୋଧେ—ବାହୁପାଶରେ ବନ୍ଧନ କରିଅ ।

୧୯—ରସ ରସ—ମୋଠାରେ ରତିକୁ ଆଦର କର । ରସନା—ଅଣ୍ଟାସୂତାକୁ, ବଜାଇ ବିପରୀତ ରତିରେ ମୋତେ କିଣ । ବଳାକୁ ରତିରେ ବଳା—ବଜାଅ । ବଳାରାତି—ଇନ୍ଦ୍ର ।

୨୦—ହେ ଧନ ! ଧନପତି ସିଦ୍ଧି—କୁବେର ଐଶ୍ୱର୍ଯ୍ୟ ବା ଧନପ୍ରାପ୍ତି କେଉଁ ବଡ଼ ? ନାକଲ ଭଙ୍ଗୀରେ—ସୁରତରେ ନାହିଁ କରିବା ଭଙ୍ଗିରେ, ନାକ ନାକ—ସ୍ୱର୍ଗସୁଖ, ଚୂର୍ଣ୍ଣ ହେବ କିମ୍ବା ନାକର—ନାସିକାର, "ନା" କଲା ଭଙ୍ଗିରେ ସ୍ୱର୍ଗ—ନାକ, ଚୂର୍ଣ୍ଣ ହେବ ।

୨୧—ନାଗ—ରତିରେ ଲାଗ, ନାଗବନ୍ଧ—ରତିବନ୍ଧ, ବିଶେଷ ହେଲେ ନାଗ—ସର୍ପମଧ୍ୟ, ଭାଜିଯିବ—ହାରିଯିବ । ମାନ—ଘେନ । ଦେଖି—ମାନବର ମାନ—ମନୁଷ୍ୟର ଗର୍ବ, ରହିବ କି ?

୨୨—ହାରେ ବନ୍ଧୁ ! (ଆହାରେ ବନ୍ଧୁ) ସୁଖୋକ୍ତି, ହାରେ—ମାଳାକୁ, ହାରେ—ମାଳାରେ, ଛନ୍ଦ କର ହେ ଭିନ୍ନକଳାକେଶି—ଦଳିତାଞ୍ଜନ କେଶି ! ଭିନ୍ନ ଭିନ୍ନ କରି କି—ପୃଥକ୍ ପୃଥକ୍ ହେବା ଉଚିତ କି ?

୨୩--ଧରାଧରା—ବରାହ ଅବତାରେ ପୃଥିବୀଧାରୀ କୃଷ୍ଣ, ଧରା—ଅଧୀନ, ପରି ଏପରି କହିବାରୁ ଗୁଣମଣି—ଚନ୍ଦ୍ରାବଳୀ, ଶୁଣି ଗୁଣି ଗୁଣି—ଭାବି ଭାବି, ଧୀରେ, ଅଳ୍ପ, ଗୁହ୍ନିଲେ କିମ୍ବା ଧୀରେ—ବୁଦ୍ଧିରେ, ଗୁଣି ପୁଣି····· ।

ହରି ହରି ହରିପଦ-ଦ୍ୱନ୍ଦ୍ୱ ହୃଦେ ଚିନ୍ତ ।
ଧନି ଧନି ଦୀନ ଅଭିମନ୍ୟୁ ନେଇ ନିତ । ୨୪ ।

---

## ଏକବିଂଶ ଛାନ୍ଦ

## ଚନ୍ଦ୍ରାବଳୀ ସମ୍ଭୋଗ

ମପୂର୍ବାନୁପ୍ରାସ । ବାଣୀ—ମୁନିବର

**ମା**ଧବ ସମ୍ଭୋଗ ରସ । ମହତ ମାନସ ହଂସ ।
ମଜ୍ଜିନେ ହୋଇବ ତୋଷ । ମ ଅନୁପ୍ରାସ ଯେ । ୧ ।
ମୁରଲୀଧର ବଚନେ । ମଦାଳସୀ ତୋଷମନେ ।
ମନ୍ଦହାସ ପରକାଶେ । ମଦନାବେଶେ ଯେ । ୨ ।
ମୋହନବରିଷ୍ଠ ତା ଜାଣି । ମରି ବନ୍ଧୁ ଛନ୍ନେ ଭଣି ।
ମଣ୍ଡିଲେ ଗଣ୍ଡେ ଚୁମ୍ବନ । ମତି ପ୍ରସନ୍ନ ଯେ । ୩ ।
ମଦକଳା ଲାଜ ବହି । ମଥା ପୋତି ଉଠି କହି ।
ମଧୁପର କରେ ନୀବି । ମୋକ୍ଷଣ ଭାବି ଯେ । ୪ ।

---

୨୪—ଦୀନ—ଗରିବ । ଅଭିମନ୍ୟୁ ହରି—ଇନ୍ଦ୍ରାଦି ଦେବତାମାନଙ୍କ, ହରି—ଗ୍ରୁଡ଼ି, ହରି ପଦଦ୍ୱନ୍ଦ୍ୱ—ଶ୍ରୀକୃଷ୍ଣଙ୍କ ପାଦ ଯୁଗଳକୁ, ଚିନ୍ତା କରି ନିତି ଧନି ଧନି ନେଇ—କାଳ କଟାଇ କିମ୍ବା ହରି—କୃଷ୍ଣ, ହରି ନାୟିକା ଏ ଦୁହିଙ୍କର ହରିପଦ—ପାଦପଦ୍ମ ଅଥବା ହରି ହରି—ସମାପ୍ତି ସୂଚକ ଆନନ୍ଦ ଶବ୍ଦ, ଆନନ୍ଦରେ ଲୋକେ ହରି ହରି ଶିବ ଶିବ କହୁଥାନ୍ତି ।

---

୧—ମାଧବଙ୍କର ସମ୍ଭୋଗ ବର୍ଣ୍ଣନରୂପକ ରସ—ଜଳରେ ମହତ୍ ଲୋକମାନଙ୍କର ମାନସ ହଂସ—ମନରୂପକ ମତ୍ସ୍ୟ, ମଜ୍ଜିଲେ ସନ୍ତୁଷ୍ଟ ହେବ । ମକାର ଅନୁପ୍ରାସରେ ଏ ଛାନ୍ଦ ରଚିତ ।

୨—ମଦନାବେଶେ—କନ୍ଦର୍ପରେ ଘାରି ହୋଇ । ପରକାଶେ—ପ୍ରକାଶ କଲା ।

୩—ମୋହନ ବରିଷ୍ଠ—ମୋହନ ଶ୍ରେଷ୍ଠ, ଶ୍ରୀକୃଷ୍ଣ । ମରି—ଆନନ୍ଦସୂଚକ ଅବ୍ୟୟ । ଛନ୍ନେ—ଉଦ୍‌ବେଗରେ । ଭଣି—କହି ।

୪—ମଦକଳା—ମଦୋତ୍କଟା ଶ୍ରୀ ଚନ୍ଦ୍ରାବଳୀ । ମଧୁପର—ମଧୁଦୈତ୍ୟର, ପର—ଶତ୍ରୁ, ଶ୍ରୀକୃଷ୍ଣ । କରେ—ହସ୍ତରେ । ନୀବି—ଖୋସଣୀ । ମୋକ୍ଷଣ—ଫିଟାଇବା । ଭାବି—ବିଚାରିଲେ ।

ମନ୍ଦାକ୍ଷେ ବାରଇ ବାଳୀ । ମୃଣାଳ ସୂତ୍ରେ ସମ୍ଭାଳି ।
ମଦୋତ୍କଟ ଦନ୍ତୀ ନୋହେ । ମିଥ୍ୟା ଆଗ୍ରହେ ସେ ॥ ୫ ॥
ମୁକ୍ତ କରି ଚୀର ହରି । ମର୍ଦ୍ଦନ ଉରଜ କରି ।
ମତ୍ତେ ବନ୍ଧ ଆରମ୍ଭିଲେ । ମନୋଜ ବଳେ ସେ ॥ ୬ ॥
ମହିଳା ଅତି ଅଥୟେ । ମୁଦେ ନୟନ ବ୍ରୀଡ଼ାୟେ ।
ମନାସେ ବିହି କି କଲା । ମହତ୍ତ୍ୱ ଗଲା ସେ ॥ ୭ ॥
ମନୋରମା ତ୍ରପା ହେଜି । ମୃଗାଙ୍କକୁ ଖୋଜି ଖୋଜି ।
ମାର ମିତ୍ରବାଦେ ଭୂକ୍ଷେ । ମନ ସରସେ ସେ ॥ ୮ ॥
ମହିଳା-ଶ୍ରବଣ-ବିଳେ । ମିଶାଇ ରସନା ଚାଳେ ।
ମତ୍ତଭେଳେ ମଦାଳସୀ । ମଦନେ ରସି ସେ ॥ ୯ ॥
ମନ୍ଦାକ୍ଷ ତୁଟିଲ୍ ମନୁ । ମୋହ ଚରିୟେ ସୁତନୁ ।
ମାର ମୂର୍ଚ୍ଛା ଶାନ୍ତ ମତି । ମୋହନ କୃତି ସେ ॥ ୧୦ ॥

---

୫—ମନ୍ଦାକ୍ଷେ—ଲଜ୍ଜାରେ । ବାଳୀ—ବାଳା, ଚନ୍ଦ୍ରାବଳୀ । ମୃଣାଳ-ସୂତ୍ରେ—ପଦ୍ମନାଡ଼ ମଧ୍ୟ ସୂତାରେ । ମଦୋତ୍କଟଦନ୍ତୀ—ମତ୍ତହସ୍ତୀ, ସମ୍ଭାଳି ନୋହେ । ମିଥ୍ୟା ଆଗ୍ରହେ—ମିଛ ଆଗ୍ରହଦ୍ୱାରା । ଆଗ୍ରହ—ଚେଷ୍ଟା । ମିଥ୍ୟା—ନିଷ୍ଫଳ ।

୬—ମୁକ୍ତ କରି—ଫିଟାଇ । ଚୀର—ବସ୍ତ୍ର । ଉରଜ—ସ୍ତନ । ମତ୍ତେ—ଉନ୍ମତ୍ତ ହୋଇ । ବନ୍ଧ—ରତି ବିଶେଷ । ମନୋଜବଳେ—କନ୍ଦର୍ପ ପ୍ରଭାବରେ ।

୭—ମହିଳା—ସ୍ତ୍ରୀ ଚନ୍ଦ୍ରାବଳୀ । ମୁଦେ—ବୁଜିଲା । ବ୍ରୀଡ଼ାୟେ—ଲଜ୍ଜାରେ । ମନାସେ—ବିଚାର କଲା ।

୮ । ମନୋରମା—ସୁନ୍ଦରୀ ଚନ୍ଦ୍ରାବଳୀ । ତ୍ରପା—ଲଜ୍ଜାକୁ । ହେଜି—ଜାଣିପାରି । ମୃଗାଙ୍କ—ଶରୀରସ୍ଥ ଚନ୍ଦ୍ର । ମାରମିତ୍ରବାଦେ—କନ୍ଦର୍ପର ମିତ୍ର ବୋଲି ବିବାଦରେ । ଭୂକ୍ଷେ—ନଖଦ୍ୱାରା କ୍ଷତ କଲା । ରତି ବିଶେଷରେ ପୁରୁଷର ବିଭିନ୍ନ ଅଙ୍ଗରେ ଚନ୍ଦ୍ର ଥାଏ ଏବଂ ସେହିପରି ସ୍ତ୍ରୀର ବିଭିନ୍ନ ଅଙ୍ଗରେ ଚନ୍ଦ୍ରକଳା ଥାଏ । ରତିଜ୍ଞ ପୁରୁଷ ଓ ସ୍ତ୍ରୀ, ସ୍ତ୍ରୀ ଓ ପୁରୁଷର ସେହି ସେହି ଅଙ୍ଗମାନଙ୍କରେ ନଖାଦି କ୍ଷତ କରି କଳା ଓ ଚନ୍ଦ୍ର ଚାଳନ କରନ୍ତି ।

୯—ମହିଳା-ଶ୍ରବଣ-ବିଳେ—ଚନ୍ଦ୍ରାବଳୀର କର୍ଣ୍ଣରନ୍ଧ୍ରରେ । ରସନା—ଜିହ୍ୱା । ମଦନେ ରସି—କନ୍ଦର୍ପ ପୀଡ଼ାରେ ଆସକ୍ତ ହେଲେ ।

୧୦—ସୁତନୁ—ସୁନ୍ଦରୀଚନ୍ଦ୍ରାବଳୀ । ମାରମୂର୍ଚ୍ଛା ଶାନ୍ତମତି—କନ୍ଦର୍ପଜନିତ ମୋହ ଛାଡ଼ିବା ରୀତି । ମୋହନକୃତି—ଶ୍ରୀକୃଷ୍ଣ କଲେ ।

ମିଳାଇ ଜହ୍ନା ଚୂଚୂକେ । ମର୍ଦ୍ଦି ନିତମ୍ବ କରକେ ।
ମୁଖବାୟୁ ଶ୍ରୁତିବିଳେ । ମଧୁରେ ଦେଲେ ଯେ ୍ । ୧୧ ।
ମୁଷ୍ଟିକ ଜଙ୍ଘେ ଫେରଣ । ମୂର୍ଦ୍ଧାଘ୍ରାଣ ଚୁମ୍ବ ଗୁଣ ।
ମୃଗାଙ୍କଙ୍କୁ ଅସ୍ତେ କଲେ । ମୃଗାଙ୍କ ଛଳେ ଯେ ୍ । ୧୨ ।
ମାତି ନାନାବନ୍ଧମତେ । ମଜ୍ଜିଲେ ଆନନ୍ଦ ମତ୍ତେ ।
ମନ୍ମଥ ଶବଦ ଜାତ । ମନ୍ଦ ହୁଁ କୃତ ଯେ ୍ । ୧୩ ।
ମିଶି ସୀତ୍କାର ବିକାର । ମିଥ୍ୟା ନାନା ଅନିବାର ।
ମର୍ଷଣେ କେଳିତପତି । ମୁଦ ଦମ୍ପତି ଯେ ୍ । ୧୪ ।
ମନ୍ଦାକ୍ଷ ବସନ ସଙ୍ଗେ । ମିଳିଲା ରମାଶ୍ରୀଅଙ୍ଗେ ।
ମଥା କର ବାଳୀ ନତ । ମଉନବ୍ରତ ଯେ ୍ । ୧୫ ।
ମୋହନା ରତାନ୍ତ-ଭ୍ରାନ୍ତ । ମଣିଲାଚିଁ ଗ୍ରୀଷ୍ମଶ୍ରାନ୍ତ ।
ମିହ କର ଜ୍ୱଳା ଅନ୍ତ । ମରୁତେ ମତି ଯେ ୍ । ୧୬ ।

---

୧୧—ଚୂଚୂକେ—ସ୍ତନ ଅଗ୍ରରେ । ନିତମ୍ବ—ପିଚ୍ଛକୁ । କରକେ—ଏକ ହସ୍ତରେ । ମୁଖବାୟୁ—ଫୁଙ୍କା । ଶ୍ରୁତିବିଲେ—କର୍ଣ୍ଣ ରନ୍ଧ୍ରରେ ।

୧୨—ମୁଷ୍ଟିକ—ମୁଠାକୁ । ଫେରଣ—ପକାଇବ । ମୂର୍ଦ୍ଧାଘ୍ରାଣ—ମୁଣ୍ଡକୁ ଶୁଙ୍ଘିବା । ମୃଗାଙ୍କଙ୍କୁ—ଶରୀରସ୍ଥ ଚନ୍ଦ୍ରକୁ । ମୃଗାଙ୍କ ଛଳେ—ଚନ୍ଦ୍ର ଛଳନାରେ । ବିରହରେ ଚନ୍ଦ୍ର ବାଧା ଦେଉଥିଲା, ବର୍ତ୍ତମାନ ଚନ୍ଦ୍ରାବଳୀଙ୍କ ସୁରତ ମୋହ ନିବାରଣ କରିବାକୁ ସ୍ଥଳିତ ଶରୀରସ୍ଥ ଚନ୍ଦ୍ରକୁ ଅସ୍ତ କରିବାଦ୍ୱାରା ବାଧକଚନ୍ଦ୍ରକୁ ଅଧୀନ କରେ କି ?

୧୩—ନାନାବନ୍ଧମତେ—ବହୁ ପ୍ରକାର ବନ୍ଧନମରେ । ମତ୍ତେ—ଉନ୍ମତ୍ତ-ଭାବେ । ମନ୍ଦ 'ହୁଁ' କୃତ ମନ୍ମଥ ଶବ୍ଦ—କନ୍ଦର୍ପ କ୍ରୀଡ଼ା ଧ୍ୱନି ଜାତ ହେଲା । ତାହା କନ୍ଦର୍ପର ସ୍ୱୀକାର ସୂଚକ ହୁଁ କଲପରି ହେଲା ।

୧୪—ସୀତ୍କାର ବିକାର—'ଈଷି ପ୍ରଭୃତି ବିକାର । ଅନିବାର—ଅନିବାରିତ ବହୁତ ଅର୍ଥାତ୍ "ନା ନା"—"ନାହିଁ ନାହିଁ" ଶବ୍ଦ ମିଥ୍ୟା ହେଲା । ମର୍ଷଣେ—ପରାଜୟରେ । କେଳିତପତି – କନ୍ଦର୍ପ । ମୁଦ—ଆନନ୍ଦିତ ହେଲେ ।

୧୫—ମନ୍ଦାକ୍ଷ—ଲଜ୍ଜା । ବସନସଙ୍ଗେ—ବସ୍ତ୍ର ସହିତରେ । ରମା—ସ୍ତ୍ରୀ, ଚନ୍ଦ୍ରାବଳୀର । ଚନ୍ଦ୍ରାବଳୀ ଲଜରେ ଲୁଗା ପିନ୍ଧିଲେ । ସହୋକ୍ତି ଅଲଙ୍କାର । ନତକରି—ଲୁଆଇଁ । ମଉନବ୍ରତ—ତୁନି ହେଲେ ।

୧୬—ମୋହନା—ମୋହକାରଣୀ ଚନ୍ଦ୍ରାବଳୀର । ରତାନ୍ତଖେଦ—ରତି ଶେଷରେ ଶୋଷ । ଗ୍ରୀଷ୍ମଶ୍ରାନ୍ତ—ଗ୍ରୀଷ୍ମକାଳର ଅବସ୍ଥା ପରି । ମିତକର ଜ୍ୱାଳା—ସୂର୍ଯ୍ୟକିରଣ ଦୀପ୍ତି । ଗ୍ରୀଷ୍ମରେ ଓ ମିତ୍ର ଶ୍ରୀକୃଷ୍ଣଙ୍କ ହସ୍ତର ନଖକ୍ଷତ ପୀଡ଼ା ରତାନ୍ତରେ । ମରୁତେ—ବାୟୁରେ । ମତି—ମନ, ଦୁଇଥିରେ ସମାନ ।

'ମଲ' ମୁଖେ ବିକଶିତ । ମହାସ୍ୱେଦରେ ରଞ୍ଜିତ ।
ମୋକ୍ଷ ହେଲେ ପତ୍ରାବଳୀ । ମିଥୁନ ସଳ ଯେ । ୧୭ ।
ମହତ୍ତ୍ୱ ଗଣ୍ଡ ଖଣ୍ଡନ । ମଣ୍ଡିବା ଗୃନ୍ଦମା ମନ ।
ମର୍ଯ୍ୟାଦା ଏପରି ଦେଖି । ମାଧବ ଦୁଃଖୀ ଯେ । ୧୮ ।
ମରି ବନ୍ଧୁ କହି କରି । ମୁଖ ଚୁମ୍ବି କୋଳେ ଧରି ।
ମଧୁକାଳ କଲେ ବେଶେ । ମହା ଉଲ୍ଲାସେ ଯେ । ୧୯ ।
ମରମ ପରମ ପ୍ରୀତି । ମୂଳ କରି ସେ ଦମ୍ପତି ।
ମଲ୍ଲମାତେ ଭୟ କଲେ । ମେଲାଣି ହେଲେ ଯେ । ୨୦ ।
ମଲ୍ଲ ନଗରେ ମିଳିଲେ । ମିଥ୍ୟାରେ ସଖୀ ବୋଇଲେ ।
ମାତା ତୁମ୍ଭ ବଧୂ ଆଜ । ମହା ନିରୁଜ ଯେ । ୨୧ ।
ମହାମାୟା ଦୟା ହେଲା । ମଦକଳା ବ୍ୟାଧି ଗଲା ।
ମଲ୍ଲମାତା ଶୁଣି ତୋଷ । ମନେ ବିଶେଷ ଯେ । ୨୨ ।

---

୧୭ ରତାନ୍ତରେ "ମଲ" । ଏହି ଶବ୍ଦ ମୁଖରେ ବିକଶିତ—ପ୍ରକାଶିତ ହେଲା । ଗ୍ରୀଷ୍ମର ଆଦ୍ୟରେ ମଲ୍ଲୀଫୁଲ ମୁଖେ—ପ୍ରଥମେ, ପ୍ରସ୍ଫୁଟିତ ହୁଏ । ମହାସ୍ୱେଦରେ—ଅଧିକ ଝାଳରେ । ରଞ୍ଜିତ—ବ୍ୟାପ୍ତ । ଦୁଇଥିରେ ସମାନ । ଗ୍ରୀଷ୍ମରେ ପତ୍ରାବଳୀ—ପତ୍ର ସବୁ, ନାନା ସ୍ଥାନରେ ଚନ୍ଦନଚିତା, ମକରିକା ପ୍ରଭୃତି । ମୋକ୍ଷ ହେଲେ—ଝଡ଼ି ପଡ଼ିଲେ । ମିଥୁନ—ସ୍ତ୍ରୀ ପୁରୁଷ ଯୋଗ । ସଳ—ଶଲ୍ୟ—ଶଲ୍ୟ, ଅଥବା ମିଥୁନ ମାସ ଶଲ୍ୟ ହୁଏ । ରତାନ୍ତରେ ପତ୍ରାବଳୀ—ସ୍ତନାଦିରେ ଚିତ୍ର ରଚନା । ମୋକ୍ଷ ହେଲେ—ଲିଭିଗଲେ । ମିଥୁନ—ସ୍ତ୍ରୀ ପୁରୁଷ ମିଳନର, ସଳ—ଶଲ୍ୟ ହେଲା ।

୧୮—ଗ୍ରୀଷ୍ମରେ ଗଣ୍ଡଖଣ୍ଡନ—ଗମ୍ଭୀର ଜଳର ହ୍ରାସ; ମହତ୍ତ୍ୱ—ଆଧିକ୍ୟ ବା ଗଣ୍ଡର ମହତ୍ତ୍ୱ ଖଣ୍ଡନ—ଜଳର ଗମ୍ଭୀରତା ହାନି । ଗୃନ୍ଦମା ମନ ମଣ୍ଡିବା—ମନ ତୋଷ କରେ । ରତାନ୍ତରେ ଗଣ୍ଡଖଣ୍ଡନ—ଗାଲରେ ଦନ୍ତକ୍ଷତର ମହତ୍ତ୍ୱ—ଆଧିକ୍ୟ ହେଲା ବା ଗଣ୍ଡର ମହତ୍ତ୍ୱ—ଶୋଭା ଖଣ୍ଡନ କି ନଷ୍ଟ ହେଲା । ଗୃନ୍ଦମାକୁ—ଜଙ୍ଘ ଘାଟକୁ, ମଣ୍ଡିବା—ନଖଦ୍ୱାରା ଶୋଭିତ କରିବାକୁ । ଅର୍ଥାତ୍ ସେଠାରେ ବିଶ୍ରାମ କରିବାକୁ ମନ ହେଲା । ମାଧବ—ଶ୍ରୀକୃଷ୍ଣ, ଏପରି ମର୍ଯ୍ୟାଦା—ଅବସ୍ଥା ଦେଖି ଦୁଃଖିତ ହେଲେ ।

୧୯—ମଧୁକାଳ—ବସନ୍ତ ଅର୍ଥାତ୍ ଶୋଭିତ । ବେଶେ—ବେଶ କରିବା ଦ୍ୱାରା । ମହାଉଲ୍ଲାସେ—ଅତି ହର୍ଷରେ ।

୨୦—ମରମ ପରମପ୍ରୀତି—ଅନ୍ତଃକରଣର ଗାଢ଼ ଅନୁରାଗକୁ । ମୂଳ—ସ୍ଥିର, ନିଶ୍ଚୟ । ମଲ୍ଲମାତେ – ଗୋବର୍ଦ୍ଧନମଲ୍ଲର ମାତାଙ୍କୁ ( ନାମ—ଭାରୁଣ୍ଡା ) ।

୨୧—ବଧୂ—ବୋହୂ । ମହାନିରୁଜ—ଉତ୍ତମ ଭାବରେ ରୋଗଶୂନ୍ୟ ।

ମୁଁ ନିଷେଧ ନ କରିବି । ମୂଳ କର ଭୂଜୁ ଦେବି ।
ମଲ୍ଲମାତା ଆଜ୍ଞା ଦେଲେ । ମିତଣୀଜାଳେ ସ୍ନେ । ୨୩ ।
ମନଘେନା କର ତହିଁ । ମଦନା ସଜନୀ କହି ।
ମିଥ୍ୟା ଅପବାଦ ପାଇଁ । ମୁହିଁ ଡରଇଁ ଗୋ । ୨୪ ।
ମହାଶୋଭି ତୁମ୍ଭ ବଧୂ । ମାଧୂର୍ଯ୍ୟେ ସୁରସସିନ୍ଧୁ ।
ମଧୁସୂଦନ ଚଞ୍ଚଳ । ମହାପ୍ରବଳ ଗୋ । ୨୫ ।
ମଲ୍ଲ ସାନ ଭାଇ ଯେଣୁ । ମାନନୀ ଦେବର ତେଣୁ ।
ମିଳିବେ କାଳେ ସେ ବନେ । ମାୟାରେ ମନେ ସ୍ନେ । ୨୬ ।
ମଲ୍ଲମାତା ବାକ୍ୟଦତ୍ତ । ମୋ ବଧୂ ଦେବର ସତ ।
ମୋ ଖ୍ୟାତି ଇଙ୍ଗିତେ ନାହିଁ । ମୁକୁନ୍ଦ ତହିଁ ଗୋ । ୨୭ ।
ମନେ ମନେ ଆନ ଚିନ୍ତ । ମାନ ଜଗିଥିବ ନିତ୍ୟ ।
ମଣିଲେ କହୁ ତା ଦ୍ରୋହ । ମୋ ଆଗେ କହ ଗୋ । ୨୮ ।
ମହନ୍ତ୍ର ସାରିବ ତାର । ମଧମ କଲେ ଆଚ୍ଛର ।
ମିତେ ଏତେକ ଶୁଣିଲେ । ମୁଦ ହୋଇଲେ ସ୍ନେ । ୨୯ ।
ମିଳନ ସେ ହୃଦୁ ନିତ୍ୟ । ମହୋତ୍ସବରେ କରନ୍ତ ।
ମହାମାୟା ପୂଜାଛଳେ । ମନ ପ୍ରବଳେ ସ୍ନେ । ୩୦ ।
ମୁରଜକଟିଭଙ୍ଗୀୟା । ମୁରଳୀମୁଖ ରଙ୍ଗୀୟା ।
ମଧୁମଙ୍ଗଳସଙ୍ଗୀୟା । ମାନଭଙ୍ଗୀୟା ସ୍ନେ । ୩୧ ।

---

୨୨—ମହାମାୟା—ଗୌରୀ, ଅମ୍ବିକା । ମଦକଳା—ମଦୋତ୍କଣ୍ଠା ଚନ୍ଦ୍ରାବଳୀ । ବ୍ୟାଧି—ରୋଗ ।

୨୩—ମୂଳକର—ଏକାନ୍ତ ଭାବରେ, ନିଷ୍ଠାରେ । ମିତଣୀ ଜାଳେ—ସଖୀସମୂହଙ୍କୁ ।

୨୪—ମଦନା—ଜଣେ ସଖୀ ।

୨୫—ମହାଶୋଭି—ସୁନ୍ଦରୀ । ମାଧୂର୍ଯ୍ୟେ—ମନୋହରତାରେ । ସୁରସସିନ୍ଧୁ—ରସସାଗର ସ୍ୱରୂପା । ମଧୁସୂଦନ—ଶ୍ରୀକୃଷ୍ଣ । ମହାପ୍ରବଳ—ବଡ଼ ବଳୁଆ ।

୨୬—ମଲ୍ଲ—ଗୋବର୍ଦ୍ଧନ ମଲ୍ଲ । ମାନନୀ—ମାନବତୀ ଚନ୍ଦ୍ରାବଳୀର । ମାୟାରେ ମୋ ମନରେ ଭୟ । ପାଠାନ୍ତରେ, ମୋର ମନରେ ଖି—ଭୟ ହେଉଅଛି ।

୨୭—ଇଙ୍ଗିତେ—ପରିହାସ କରିବାରେ । ମୁକୁନ୍ଦ—ଶ୍ରୀକୃଷ୍ଣ ।

୨୮—ଆନ ଚିନ୍ତ—ଅନ୍ୟ ମନ୍ଦ ଆଚରଣ । ଦ୍ରୋହ—ଅନିଷ୍ଟ ।

୨୯—ମଧମ—ଗୁହ୍ୟକଥା । ଆଚ୍ଛର—ଆଚରଣ ।

୩୦—ମହୋତ୍ସବରେ—ଅତି ଉତ୍ସବରେ ।

ମନମଥ-ମୋହନୀୟା । ମହାସୁଖ-ସଦନୀୟା ।
ମରକତ-ପିତୁଳୀୟା । ମିନ-ମେଳୀୟା ଯେ । ୩୨ ।
ମୟୂରଚୂଳୀୟା ଭାବ । ମନେ ଅଭିମନ୍ୟୁ କବ ।
ମହାନନ୍ଦ ସଦା ହବ । ମହାନ୍ତେ ଘେନ ଯେ । ୩୩ ।

---

## ଦ୍ୱାତ୍ରିଂଶ ଛାନ୍ଦ

### ପ୍ରାନ୍ତାନୁପ୍ରାସ

ରାଗ—ଆନନ୍ଦ । ଗୁରୁଲବଙ୍ଗଲତା ବାଣୀ ।

**ଧୀ**ରେ ଶୁଣ କୃଷ୍ଣରସ ବାଣୀକି । ସ୍ୱାଦୁ ସମନାରେ ସୁଧା ଆଣିକି ।
ସୁମରି, ରାଧାଗୁଣଶ୍ରେଣୀକି । କୃଷ୍ଣ ନ ପାରନ୍ତି ରଖି ଆଣିକି । ୧ ।
ଲଭିଲେ ବରଜ ନବବାଳୀଙ୍କି । ସୁଖେ ଭୋଗ କଲେ ଚନ୍ଦ୍ରାବଳୀଙ୍କି ।
ତେବେହେଁ, ନିତ ବନମାଳୀଙ୍କି । କାମ ଦେଲା ଚିନ୍ତା ଜପାମାଳିକି । ୨ ।
ଦେଖିବାରୁ କୃଷ୍ଣ ଦୁଖରାଶିକି । ଚିନ୍ତା ପ୍ରାପ୍ତ ହେଲା ପୂର୍ଣ୍ଣମାସୀଙ୍କି ।
କହନ୍ତି, ହସି ଗିରିଧାରୀଙ୍କି । କହୋ ନାଗରେନ୍ଦ୍ର ଏ ଗୁରୁଭୂମି କି । ୩ ।
କୋଟି-କାମ ଶୋଭା ଊଣା ଯହିଁକି । ସେ ତନୁ ମଳିନ ହେଲେ କାହିଁକି ?
ନିନ୍ଦଇ, ମୁଖ କଳାନିଧିକି । କହିଁ ଭଜନ୍ତି ବିରସବିଧିକି । ୪ ।
ହୋଇ ଅଛଇ ଅତନୁବ୍ୟାଧି କି । ଦେଲ ମନ କଉଁ ରସନିଧିକି ।
ନ କହ, ମୋତେ କାହିଁ ପାଇଁକି । ଦେବା ଔଷଧ ମଦନ ବାଇକି । ୫ ।

---

୩୧—ମୁରଜିତ—ଶ୍ରୀକୃଷ୍ଣ । ମାନଭଙ୍ଗୀଆ—ମାନଭଞ୍ଜନକାରୀ ।

୩୨—ମନମଥମୋହନୀୟା— ମଦନମୋହନ । ମହାସୁଖସଦନୀଆ—ପରମସୁଖ ସ୍ଥାନ । ମରକତପିତୁଳୀୟା—ନୀଳମଣିର ପିତୁଳା ପରି ସୁନ୍ଦର ।

୩୩—ମହାନ୍ତେ—ମହାପୁରୁଷମାନେ ।

---

୧—କୃଷ୍ଣରସବାଣୀକି—ଶ୍ରୀକୃଷ୍ଣରସପୂର୍ଣ୍ଣ ବଚନକୁ । ସୁଧା—ଅମୃତ । ଆଣି—ଟେକି ବା ତୁଳନା ପାଇଁ ଅଣାଯାଏ କି ? ଆଣିକି—ଧୈର୍ଯ୍ୟକୁ । ୨—କାମ—କନ୍ଦର୍ପ ।

୪—କୋଟିକାମଶୋଭା—ଅସଂଖ୍ୟ କନ୍ଦର୍ପ ସୌନ୍ଦର୍ଯ୍ୟ । ତନୁ—ଦେହ । କଳାନିଧିକି—ଚନ୍ଦ୍ରକୁ । ବିରସବିଧିକି—ଦୁଃଖିତ ପ୍ରକାରକୁ ।

୫—ଅତନୁବ୍ୟାଧି—କନ୍ଦର୍ପପୀଡ଼ା । ରସନିଧିକି—ରସବନ୍ତଙ୍କ । ମଦନ-ବାଇକି—କନ୍ଦର୍ପରୂପ ବାୟୁ ପୀଡ଼ା ।

ଦେଖି ତବ ମୁଖ ତୁଚ୍ଛ ନାରୀ କି । ରମା ଲୋଭେ ଛାଡ଼ିଦେବେ ହରିଙ୍କି ।
ଧରିବ, ଆଉ କେବା ଧୃତିକି । ଧନ୍ୟ ଯେ ମୋହିଲା ତୁମ୍ଭ ମତିକି । ୬ ।
ଇଚ୍ଛା ଏ ଛାର ବ୍ରଜରମଣୀକି । ଦେଖି ମୁଖ ଧରନ୍ତୁ କେ ଆଣିକି ।
ନାହିଁ ସେ, ତୁମ୍ଭ ନାମ ଶୁଣି କି । କା ଦମ୍ଭ ବଳନ୍ତୁ ପବି-ଅଣିକି । ୭ ।
ଧନ୍ୟ କହିବା ନା ସେ ଛଇଳୀକି । ହେଲା ମୋହନ ମାହିବା ଭଳକି ।
ବୋଲ ହେ, ଚିତ୍ତ ଦେଲ କାହିଁକି । ଜାଣିଲେ କହିବା ବୁଦ୍ଧି ତହିଁକି । ୮ ।
ଦେବ ଶିକ୍ଷା ମନ୍ତ୍ର ତନ୍ତ୍ର ବଧିକ । ଆକରଷିବ ଦେବବାମାଧୀକି ।
ଅଙ୍ଗନା, ବାମ-ପାଦ-ଧୂଳିକି । ମନ୍ତ୍ରି ମନ୍ତ୍ରିବ ନିଜ ମଣ୍ଡଳିକି । ୯ ।
ତ୍ରିବୀଜ ରତି ପୀରତି ଧୃତିକି । କୁସୁମବାଣାୟ ନମୋ ଏତିକି ।
ଏ ଧୂଳି, ମନ୍ତ୍ରରାଜ୍ୟଭେଳିକି । ମୋହି ନୋହିବ ଅବଳା ବଳ କି । ୧୦ ।
କାମବୀଜ ନାରୀ ନାମ ଯେତିକି । ବଶ୍ୟଜୟାସ୍ତୁ ମିଶାଇ ତେତିକି ।
ମିଳାଇ, କାମ ଅଷ୍ଟାକ୍ଷରୀକି । ବଂଶୀ ବାଇଲେ ରହିବେ ନାରୀ କି । ୧୧ ।
କାମ-ଜଗନ୍ମୋହ-ମନ୍ତ୍ର-ରୀତିକି । ଅସାଧ ତିନିଲୋକ ଯୁବତୀକି ।
ବଳିବ, ଦ୍ରବ ପବି ପାଣିକି । ମୋହିବାର ତୁଚ୍ଛ ଇନ୍ଦ୍ରାଣୀକି । ୧୨ ।
ଶୁଣି କୃଷ୍ଣ ହସି ଚାହିଁ ଆଳୀଙ୍କି । ବୋଇଲେ କି ଭାଗ୍ୟ ମୋର ଆଜ କି
କହିଲ , ଯାହା ଦିବ୍ୟ ବାଣୀକି । କିଣିଲ କିଣିଲ ବେଣୁପାଣିକି । ୧୩ ।

---

୬—ରମା—ଲକ୍ଷ୍ମୀ । ଧୃତି—ଧୈର୍ଯ୍ୟ ।

୭—ଆଣିକି—ଟେକକୁ । ପବି ଅଣିକି—ବଜ୍ରର ଟାଣକୁ ।

୮—ଭଳକି—ପରି ।

୯—ଦେବବାମାଧିକ—ଦେବସ୍ତ୍ରୀମାନଙ୍କ ( ଧୀ ) ମନକୁ, ଶ୍ରେଷ୍ଠ ଦେବସ୍ତ୍ରୀ ବା ଦେବବାମାଢ଼କି—ଦେବକନ୍ୟାମାନଙ୍କୁ । ଅଙ୍ଗନା—ସ୍ତ୍ରୀ ।

୧୦—ରତି, ପ୍ରୀତି, ଧୃତି କି ତ୍ରିବୀଜ—କ୍ଲୀ , ପ୍ଲୀଁ, ଧ୍ଲୀଂ ବା କ୍ଲୀଁ, ଶ୍ଲୀଂ, ହ୍ଲୀଁ । କୁସୁମବାଣାୟ ନମଃ ଏତିକି ମନ୍ତ୍ର । ଭେଳକି—ବିହ୍ୱଳ କରିବା ବିଷୟ, ପରାକ୍ରମରେ । ଅବଳାବଳ କି—ସ୍ତ୍ରୀର ବଳ କଣ ?

୧୧—ଯେତିକି ନାରୀ ନାମ—ସ୍ତ୍ରୀର ନାମ ଯେତେ ଅକ୍ଷର ତେତିକି, କାମବୀଜ (କ୍ଲୀଂ) ପୁଣି 'ବଶ୍ୟକସ୍ୟାସ୍ତୁ' ଏହି ପଦ ଏବଂ କାମର ଅଷ୍ଟାକ୍ଷରୀ ମନ୍ତ୍ର ( କୁସୁମ ବାଣାୟ ନମଃ ) ମିଶାଇ ବଂଶୀରେ ବାଇଲେ—ବଜାଇଲେ, ନାରୀ ରହିବେ କି ? ଅବଶ୍ୟ ବଶ ହେବେ ।

୧୨—ତିନିଲୋକ ଯୁବତୀମାନେ ଏହି କାମ—ଜଗନ୍ମୋହ ମନ୍ତ୍ର—କନ୍ଦର୍ପ ଜଗତ ମୋହିବାର ଏହି ମନ୍ତ୍ର, ରୀତିକି—ପ୍ରୟୋଗକୁ, ଅସାଧ ହେବେ କି ? ପବି—ବଜ୍ର, ଦ୍ରବ—ତରଳ, ପାଣି କି ବଳିବ ? ଇନ୍ଦ୍ରାଣୀକି—ଶଚୀଙ୍କୁ ।

୧୩—ଆଳୀଙ୍କି—ଆଉ ପୂର୍ଣ୍ଣମାସୀଙ୍କୁ ।

ବୋଧି ବିଦାକର ଭଗବନ୍ତଙ୍କି । ନିଶୋଷି ଭାବରେ ଥୋଇ ମସ୍ତକ ।
ବିଜୟେ, ହଳପ୍ରିୟ କଣ୍ଟକ । ପରଖିବାକୁ ମୁରଲୀଘାତକ । ୧୪ ।
ନଟବର ବେଶ ମୋହେ କ୍ଷିତକ । କେକୀ-ଚନ୍ଦ୍ରକ ଚୂଡ଼ା ସଙ୍ଗତକ ।
ମାନଛି, ତାହା ପରି ତହିଁକ । କବି ତୁଳନା କେ ଦେବ କାହିଁକ । ୧୫ ।
ଗୁଞ୍ଜାରପାଟି ଅଳକାବଳକ । ମକରକୁଣ୍ଡଳ ଗଣ୍ଡସ୍ଥଳୀକ ।
ଶୋହଇ, ଘନଶ୍ୟାମ କାନ୍ତିକ । ଦେଖି ସୁର ଆଖି ଲଭେ ଗତକ । ୧୬ ।
ନାସେ ରୁଚିରୁ ଗଜମୋତି ଛବିକ । କଉଁ ଅନ୍ଧ ଲକ୍ଷ୍ୟ ଦେବ କବିକ ।
କଦମ୍ବ, ପଦ୍ମ ମୋତି ମାଳିକ । ଶୋଭା ହେଲେ ପାଇ ହୃଦସ୍ଥଳୀକ । ୧୭ ।
ପୀତବାସ ପିନ୍ଧା ପରିପାଟୀ କ । ଉଦ୍ଧର ଧରିଛି କ୍ଷୀଣକଟିକ ।
ସୁବେଶ, ସାର-ଶୋଭା-କୁଟୀ କ । କହି ଆସିବ କ କୋଟିପାଟିକ । ୧୮ ।
ଦେଖି ସେକାଳ ହିଭଙ୍ଗୀଠାଣିକ । ମୋହି ନୋହିବେ ହରରମଣୀ କ ।
ଅଧରେ, ହାସୋପମା ଏତିକେ । ଅନୁରାଗ ସୁଧା କରେ ବାନ୍ତି କ । ୧୯ ।

---

୧୪—ନିଶୋଷଭାବରେ—ଶ୍ରୀରାଧା ପ୍ରେମରେ । ହଳପ୍ରିୟ କଣ୍ଟକ ବିଜୟେ—କଦମ୍ବ ନିକଟକୁ ଗଲେ ।

୧୫—କ୍ଷିତକ—ପୃଥିବୀକୁ । କେକୀ-ଚନ୍ଦ୍ରକ, ମୟୂରପୁଚ୍ଛ । ଚୂଡ଼ାସଙ୍ଗତକ ଜୁଡ଼ା ସାଙ୍ଗକୁ (କଣ କହିବା) । ତାହା ତହିଁରେ ପରି ମାନଛି, କବି କାହିଁରେ କାହାକୁ ତୁଳନା ଦେବ ।

୧୬—ଗୁଞ୍ଜାରପାଟି—ଗୁଞ୍ଜାର ପୋକର ଖୋଳପାର ମାଳା ବା ସେହିପରି ଅଳଙ୍କାର ବିଶେଷ । ମକରକୁଣ୍ଡଳ—ମଗର ଆକାର କୁଣ୍ଡଳ । ଗଣ୍ଡସ୍ଥଳୀକ—ଗାଲକୁ । ଘନଶ୍ୟାମକାନ୍ତିକ—ମେଘପରି ଶ୍ୟାମଳବର୍ଣ୍ଣ ଶ୍ରୀକୃଷ୍ଣ ଶୋଭାକୁ । ସୁର ଆଖି—ଦେବତାମାନଙ୍କର ଚକ୍ଷୁ ।

୧୭—ନାସେ—ନାସିକାରେ । ରୁଚିରୁ—ସୁନ୍ଦର । ଛବିକ—ଶୋଭାକୁ । ଅନ୍ଧ—ଅବିବେକ । କବିକ—ଶୁକ ତାରାକୁ । କଦମ୍ବପଦ୍ମ ମୋତିମାଳିକ—କଦମ୍ବ, ପଦ୍ମ ଓ ମୋତି, ଶ୍ରୀକୃଷ୍ଣଙ୍କ ହୃଦସ୍ଥଳୀକ—ଛାତିକୁ, ପାଇ କ ଶୋଭା ହେଲେ ।

୧୮—ପୀତବାସ ପିନ୍ଧା ପରିପାଟୀ—ହଳଦିଆପାଟ ପିନ୍ଧିବା ଭଙ୍ଗୀ । କ୍ଷୀଣ-କଟିକ—ସରୁ ଅଣ୍ଟାକୁ । ଉଦ୍ଧର—ଟେକ ଧରିଅଛି । ସୁବେଶ—ସୁନ୍ଦର ବେଶ । ସାରଶୋଭାକୁଟୀ—ଉତ୍କୃଷ୍ଟ ଶୋଭାର ସ୍ଥାନ । କୋଟିପାଟିକ—ଅସଂଖ୍ୟ ମୁଖକୁ ।

୧୯—ହରରମଣୀ—ପାର୍ବତୀ । ଠାଣି—ଛଇ, ଶୋଭା । ଅଧରେ—ଓଷ୍ଠରେ । ହାସୋପମା—ହାସର ତୁଳନା । ଅନୁରାଗ—ପ୍ରୀତି । ସୁଧା—ଅମୃତକୁ । ଅନୁରାଗ ରକ୍ତବର୍ଣ୍ଣ ବର୍ଣ୍ଣିତ ହେଉଥିବାରୁ ଅଧର ସହିତ ଓ ସୁଧା ଧଳା ବର୍ଣ୍ଣିତ ହୋଇଥିବାରୁ ହାସ ସହିତ ତୁଳନା କରାଯାଇଅଛି ।

ଯୋଗି ଅଧରେ ମୋହନ ବଂଶୀକି । ମୋହ ମାଦକ ଗଲେ ବରଷି କି ।
ବାଦନ, ଗୁରୁ ସ୍ୱର ଗୋଟିକି । ମାର ଶରବୃଷ୍ଟି ଗଲା ଘୋଟି କି । ୨୦ ।
ସିଂହରଡ଼ ପ୍ରତେ ଦିଗଦନ୍ତୀକି । ନାଗେ ଭସ୍ମେ ଗର୍ଜେ ଖଗପତି କି ।
ରାକ୍ଷସେ, କଲେ ମହାଖ୍ୟାତିକି । ଚାଲିଲେ ଏ ସୁଦର୍ଶନ ଗତି କି । ୨୧ ।
ଶତକୋଟି ଭୟ ହେଲା ଗିରିକି । ମଙ୍ଗଳ ଶୁଭିଲା ସୁରପୁରୀକି ।
ପ୍ରକାଶେ, ଅଲୌକିକ ଶକ୍ତିକି । ଚହ୍ଲି ପାରିବ କେ ବଂଶୀ ଉକ୍ତିକି । ୨୨ ।
ଯମୁନାପାଣି ଟେକେ ଉଜାଣିକି । ପଥରେ ଦ୍ରବିଲେ ବନ୍ଧ ପାଣିକି ।
ସ୍ଥକିତ, କଲା ଜୀବପନ୍ତିକି । ଶୁଷ୍କତରୁ ଯୋଗ୍ୟ ଜୀବଗତିକି । ୨୩ ।
ଶିଥିଳତା କଲା ଗାଢ଼ ନୀବୀକି । ଭାଙ୍ଗେ ପତିବ୍ରତା ଦମ୍ଭପବିକି ।
ସ୍ଥକିତ, କରାଇଲେ ରବିକି । ଦିବିଚରେ ଗତି କଲେ ଭୂବିକି । ୨୪ ।
ଆଗ ଗ୍ରାସିଲା ଯୁବାରମଣୀଙ୍କି । ବିବେକ ସେ ଫିଙ୍ଗାଇଲା ପାଣିକି ।
ସମ୍ଭାଳି, ନ ପାରିଲେ ବୁଦ୍ଧିକି । ମଣିଲେ ଆସେ କାମଜଳଧିକି । ୨୫ ।

---

୨୦—ମୋହମାଦକ—ମୋହିତ କରିବା ଓ ମାତାଲ କରିବା । କାରଣ କୃଷ୍ଣଚନ୍ଦ୍ର ନିଜେ ମୋହନ ଓ ମାଦନ—ଉଜ୍ଜ୍ୱଳ ନୀଳମଣି । ବାଦନ—ବଜାଇଲେ ।

୨୧— ଦିଗଦନ୍ତୀକି—ଐରାବତ ପ୍ରଭୃତି ଦଶଦିଗର ହାତୀମାନଙ୍କୁ । ପ୍ରତେ—ପ୍ରତୀତ ହୁଏ । ନାଗେ—ସର୍ପମାନଙ୍କୁ ଭସ୍ମ କରାଇବା ପାଇଁ । ଖଗପତି—ଗରୁଡ଼, ଗର୍ଜୁଛି କି ? କିମ୍ବା ନାଗମାନେ ଖଗପତି—ଗରୁଡ଼ ଉପରେ ଗର୍ଜୁଅଛନ୍ତି କି ? ସୁଦର୍ଶନଗତି—ବିଷ୍ଣୁଚକ୍ର ପ୍ରୟୋଗ ।

୨୨—ଗିରିକି—ପର୍ବତମାନଙ୍କୁ । ଶତକୋଟି ଭୟ—ବଜ୍ରଭୟ । ସୁରପୁରୀକି—ସ୍ୱର୍ଗକୁ । ପ୍ରକାଶେ—ପ୍ରକାଶ କଲା । ଅଲୌକିକ ଶକ୍ତିକି—ଅସାଧାରଣ ମହିମାକୁ । ଉକ୍ତିକୁ—କଥାକୁ, ସ୍ୱରକୁ ।

୨୩—ଉଜାଣିକି—ଉପରକୁ (ଉଦଯାନମ୍) ଟେକେ—ଉଠାଏ । ପଥରେ—ପଥର ସବୁ । ଦ୍ରବିଲେ—ତରଳିଲେ । ସ୍ଥକିତ—ଥକା । ଜୀବପନ୍ତିକି—ସବୁ ପ୍ରାଣୀଙ୍କୁ । ଶୁଷ୍କତରୁ—ଶୁଖିଲା ଗଛ । ଜୀବଗତିକି ଯୋଗ୍ୟ—ଜୀବନ ପାଇଲେ—ମୁକୁଳିଲେ ।

୨୪—ଶିଥିଳତା—ଢିଲା । ଗାଢ଼ ନୀବୀକି—ଟାଣ ଖୋସଣିକୁ । ଦମ୍ଭ ପବୀକି—ଧୈର୍ଯ୍ୟରୂପ ବଜ୍ରକୁ । ରବିକି—ସୂର୍ଯ୍ୟଙ୍କୁ । ଦିବିଚର—ସରଗରେ ଦେବତାମାନେ । ଭୂବିକି—ପୃଥିବୀକୁ । ଗତିକଲେ—ଆସିଲେ ।

୨୫—ଯୁବା ରମଣୀଙ୍କି—ଯୁବତୀମାନଙ୍କୁ । ବିବେକ—ବିଚାର ଶକ୍ତି, ବିବେଚନା । କାମଜଳଧି—କନ୍ଦର୍ପ ସମୁଦ୍ରକୁ ।

ଯା ଧ୍ୱନ ମୋହେ ବ୍ରହ୍ମାଣ୍ଡାବଳୀକ । ତହୁଁ ନାଗସ୍ୱ ପାଶବେ ବଳ କ ।
ଗୋଟିକ, ସ୍ୱର ଦହେ ଧୂତକ । ସପତ ସ୍ୱରରେ ହେବ ବର୍ତ୍ତିକ ? ୨୭ ।
ଚନ୍ଦ୍ର ସେ ମୋହନ ବଂଶୀଧାରୀକ । ରାଧାମୋହନ ବ୍ରଜବଧୂମାନଙ୍କି ।
ବୋଲଇ, ଅଭିମନ୍ୟୁ-ପାତକୀ । ତୋ ଭାବେ ଥିବ ସଦା ମୋ ଚତ୍ତ କ ।୨୮।

———

## ତ୍ରୟୋବିଂଶ ଛାନ୍ଦ

## ଶ୍ରୀ ରାଧା ନ୍ରିପୁଂସ ଭ୍ରମ

ଆଦ୍ୟ ପ୍ରାନ୍ତମଧ୍ୟାନୁପ୍ରାସ । ରାଗ—ଭୂପାଳ

ଧୀରେ ଧୀରେ ଶୁଣ ରସ କଶୋରୀ ବରସ କର ପଟରେ ସଞ୍ଚିତ ଚତ୍ତ ।
ହର ହର ମୋ ବେଦନା ବୋଲେ ସୁବଦନା ହେଉ ଚନ୍ଦ ପୁଂସ କାନ୍ତ କାନ୍ତ
ଦର୍ପ ଦର୍ପକ କରଇ କାର୍ମୁକ ଧରଇ କରିବାପାଇଁ ଅବଧ ବଧ ।
ବର-ବରନା କାରଣ କାମନବାରଣ ନୁହନ୍ତ ଆନ ବବୁଧ ବୁଧ । ୨ ।
ମନ ମନଜ ଦହିଲ କହନ୍ତ ମହିଳା ସହି ଏଥର ମୋ ଜୀବ ଯିବ ।
ଚତ୍ତ ଚନ୍ତଇ ନକର ଜଇବାତୃକର ଆଶାସ୍ୟୀ ଯେମନ୍ତ ଜୀବଞ୍ଜୀବ । ୩ ।

---

୨୭—ବ୍ରହ୍ମାଣ୍ଡାବଳୀକ—ବ୍ରହ୍ମାଣ୍ଡଯାକଲୁ । ସପତ ସ୍ୱରରେ—ସାତସ୍ୱର-ଯାକରେ । ବର୍ତ୍ତି—ସମ୍ଭାଳ, ବନ୍ଧ ।

———

୧—ଧୀରେ (ଆହେ ପଣ୍ଡିତମାନେ) ଧୀରେ—ସ୍ଥିରଭାବରେ; ରସ-ଶୁଣ । ସୁବଦନା—ସୁମୁଖୀ, କଶୋରୀ—ରାଧା, ପଟରେ ଚତ୍ତ ସଞ୍ଚିତ କର—ଚତ୍ରପଟରେ ମନଦେଇ, ବରସ—ଦୁଃଖିତା; ହୋଇ ବୋଲେ । ହେ ହର—ଶିବ, ମୋ ବେଦନା - ଦୁଃଖ, ହର—ହରଣ କର । କାନ୍ତ ଚନ୍ଦ ପୁଂସ—ସୁନ୍ଦର ଚନ୍ଦ୍ରପଟ ଲିଖିତ ପୁରୁଷ, ମୋର କାନ୍ତ—ପତ, ହେଉ—

୨—ଦର୍ପ—ଗର୍ବ । ଦର୍ପକ—କନ୍ଦର୍ପ । କାର୍ମୁକ—ଧନୁ । ଅବଧବଧ—ଅବଧ୍ୟ ସ୍ତ୍ରୀ ବନାଶ । ଆନ ବବୁଧବୁଧ—ଅନ୍ୟ ଦେବତା ଓ ପଣ୍ଡିତମାନେ । ବରବରନା—ସୁନ୍ଦରୀ ସ୍ତ୍ରୀର । କାମ ନବାରଣ କାରଣ—କନ୍ଦର୍ପବାଧା ଦୂର କରିବାର ହେତୁ ନୁହନ୍ତ ।

୩—ମନଜ—କନ୍ଦର୍ପ । ଅନୁପ୍ରାସହେତୁ "ମନୋଜ" ସ୍ଥାନେ ମନଜ ପଠିତ । ମହିଳା—ସ୍ତ୍ରୀ ଶ୍ରୀରାଧା । ନକର—ନଶ୍ଚୟ । ଜଇବାତୃକର—ଚନ୍ଦ୍ରର । ଆଶାସ୍ୟୀ—ଆଶାକାରୀ । ଜୀବଞ୍ଜୀବ—ଚକୋର ।

ସାର ସାରସଲପନ ଚନ୍ଦ ଉଦ୍ଦୀପନ ବଢ଼ାଇଲା ମୋର ଘନ ଘନ ।
ତାର ତା-ରସେ ମଜ୍ଜାଇ ପ୍ରେମ ଉପୁଜାଇ ନୋହିଲେ ହେବ ଗିଆନ ଆନ ॥
ଘାଷ ଘାଷନ୍ତେ ଏସନ ସ୍ଫୁରେ ବଂଶୀସ୍ୱନ ଶ୍ରବଣେ ରାଧା କାତରତର ।
ମାର ମାରଣା ଗରଜ ଆସେ କ ତରଜ ଏହି ଚିନ୍ତା ହେଲା ମରମର । ୫ ।
ଧୀର ଧୀର ପଳାଇଲା ଲୋଭ ବଳାଇଲା କୃଷ୍ଣ ମୁରଲୀ ସଙ୍ଗୀତ ଗୀତ ।
କରକର-ଶ୍ରୀ-ରଦନା କରେ ନିବେଦନା ଏ କି ଶୁଭେ ଅପ୍ରମିତ ମିତ । ୬ ।
ନୀବି-ନିବଡ଼-ବନ୍ଧନ ଫିଟିଲା, ବର୍ଦ୍ଧନ ହୋଇଲା ମୋର ହୃଦର ଦର ।
ସହି ସହିତ ନୋହିବ ନିଶ୍ଚୟ ଦହିବ ମାର କର ଫୁଲଶର ଶର । ୭ ।
ଅଙ୍ଗ ଅଙ୍ଗନାର ଥରେ ନୟନପଥରେ ଦେଖି ନ ସ୍ଫୁରେ ସଙ୍ଗୀର ଗିର ।
ଘଲେ ଘଲେ କର ମାର କେ ଏ ସୁକୁମାରୀ ଗତ ବେଳକୁ ଶଙ୍କର କର ।୮।
ଆଳୀଆଳଏ ବୋଇଲେ ଏରୂପେ ହୋଇଲେ ହେବ ସିନା ଅପଖ୍ୟାତ ଖ୍ୟାତ ।
ମୀର ନିରତେ ବହିଲା ନେହୁଁ ନ ରହିଲା ଦୁଖେ ନ ମଜ୍ଜା ସୁମତ ମତ ।୯।
ତନୁ ତନୁ ହୋଇଲାନି କେତେ ସହିଲାନି ହୃଦରେ ଜଳଇ ଚିନ୍ତା ଚିତା ।
ବାଶ ବାରିଜମୁଖୀଙ୍କ କହେ କେ ସଖୀକ କେ ହୋଇବ ଏହାର ତାରନ୍ତା ॥

୪—ସାର—ଉତ୍କୃଷ୍ଟ । ସାରସଲପନଚନ୍ଦ୍ର—ପଦ୍ମମୁଖ ଶ୍ରୀକୃଷ୍ଣଙ୍କର ଛବି । ଉଦ୍ଦୀପନ—କନ୍ଦର୍ପ ଉଦ୍ରେକକୁ । ଘନଘନ—ଅବିରତ, ପୁଣି ପୁଣି ତା—ରସେ ସେହି ଶ୍ରୀକୃଷ୍ଣଙ୍କର ରତରେ । ତାର—ଉଦ୍ଧାର କର । ପ୍ରେମ—ପ୍ରୀତ । ଉପୁଜାଇ ଜନ୍ମାଇ । ଗିଆନ ଆନ ହେବ—ଜ୍ଞାନ ବୁଡ଼ିବ ।

୫—ଶ୍ରବଣେ—ଶୁଣିମାତ୍ରେ । କାତରତର—ଅତ କାତର । ମାରମାରଣା—କନ୍ଦର୍ପ ତକାଏତ । ତରଜ—ତଦ କଣ । ମରମର—ହୃଦସ୍ଥର ।

୬—ଧୀର ଧୀର—ବୁଦ୍ଧିର ସ୍ଥିରତା । କରକର—ଶ୍ରୀ ରଦନା—ଡାଳିମ୍ବ ବୀଜପରି ଶୋଭିତ ଦନ୍ତ ଯାହାଙ୍କର ଏପରି ଯେ ଶ୍ରୀରାଧା । ନିବେଦନା କରେ—ଜଣାଇଲା । ଅପ୍ରମିତ—ଅକଳିତ ।

୭—ନୀବି-ନିବଡ଼-ବନ୍ଧନ—ବସ୍ତ୍ର ଗଣ୍ଠିର ଗାଢ଼ ବନ୍ଧା । ହୃଦର ଦର—ମନର ଭୟ । ଫୁଲଶର—କନ୍ଦର୍ପ ।

୮—ସଙ୍ଗୀର ଗିର—ସଖୀର ବଚନ । କେ ଘଲେ—କାଏ ବସ୍ତ୍ରରେ । ଗତ—ରକ୍ଷା । ଶଙ୍କର ହେ ଶିବ ।

୯—ଆଳୀଆଳଏ—ସଖୀସମୂହ । ଅପଖ୍ୟାତ—ଅକୀର୍ତ୍ତି । ଖ୍ୟାତ—ପ୍ରକାଶ । ନୀର—ଜଳ ଅର୍ଥାତ୍ ଲୁହ । ନିରତେ—ସର୍ବଦା । ସୁମତ—ହେ ବୁଦ୍ଧି । ମତ—ମନକୁ । ନ ମଜ୍ଜା—ବୁଡ଼ା ନା ।

୧୦—ତନୁ—ଦେହ । ତନୁ—କ୍ଷୀଣ । ଚିନ୍ତାଚିତା—ଚିନ୍ତାରୂପକ ଅଗ୍ନି । ବାଶ—ଗୁଡ଼ । ବାରିଜମୁଖୀଙ୍କ—ପଦ୍ମମୁଖୀ ଶ୍ରୀରାଧାଙ୍କ ନ ପଚ୍ଛର । ତାରନ୍ତା—ତ୍ରାଣକର୍ତ୍ତା ।

ଭାବ ଭାବିନୀ ନିରତ ବଢ଼ିଲା ଆରତ କେ କରିବ ଗଜଗତି ଗତି ।
ଲୋକେ ଲୋକେଶ ବିପକ୍ଷ ହେଲେ କେ ବା ପକ୍ଷ ହେବ ଶୁଣିନାହିଁ ଶ୍ରୁତି ଶ୍ରୁତି ॥
ଦିନ ଦିନକୁ ଦୀନ ତ ହେଲା ଜୀବନ ତ ନିରତେ ଜାତ ବ୍ୟାକୁଳ କୂଳ ।
ଜୀବ ଯିବ ଏହିକ୍ଷଣି ବୋଲେ ସୁଲକ୍ଷଣୀ ନିରତେ ଜାତ ବିକଳ-କଳ ।୧୨।
ଭାବ ଭାବିନୀ କରମେ ଏ ଦଶା ଭରମେ ରଖିଥିଲା ପୁଣି ବିଧି ବିଧି ।
ପ୍ରିୟ ପ୍ରିୟ ନ ପାଇଲେ କି ହେବ ବୋଇଲେ ପାରିବ କେହି ବିରହୀ ରହି ॥
ପାଞ୍ଚ,ପାଞ୍ଚଜଣ ଯିବା କାନନେ ଖୋଜିବା କେ କାହିଁ ବଜାଏ ବସି ବଂଶୀ ।
କତ କତବ କି ଦ୍ୱେଷୀ ନାରୀର ବିଦେଶୀ ଆଗତ କାହିଁରୁ ରୁଷି ଋଷି ।୧୪।
ଶୂର ସୁର ବା ଅସୁର-ଧେନାକ ଅସୁର କି ଅବା ନାଗ କିନ୍ନର ନର ।
ସେ କେ,ସେ କେମନ୍ତ ଲୋକ,କଲେ ତ ଆଲୋକ,ଜାଣିମା ସିନା ଅସାରସାର ॥
ସଖୀ ସଙ୍ଗତେ ଏସନ ବିଚାରି ପ୍ରସନ୍ନମୁଖୀଙ୍କ କହନ୍ତି ଜୀବ ଯିବ ।
ଧର ଧରମଭରସା ନିକଟେ ସୁରସାଳସା କରିବେ ବା ଶିବ ଶିବ ।୧୬।

---

୧୧—ଭାବ—ଭାବନା କର । ଭାବିନୀ—ସ୍ତ୍ରୀ, ଶ୍ରୀରାଧା । ନିରତ—ସର୍ବଦା । ଆରତ—ଦୁଃଖ । ଗଜଗତିଗତି—ଗଜଗାମିନୀ ଶ୍ରୀରାଧାଙ୍କର ଉଦ୍ଧାର । ଲୋକେ—ଜଗତରେ । ଲୋକେଶ—ବିଧାତା, ରାଜା । ବିପକ୍ଷ—ପ୍ରତିକୂଳ । ପକ୍ଷ—ସହାୟ । ଶ୍ରୁତି ଶ୍ରୁତି—ବେଦ ବା ଶାସ୍ତ୍ରରେ ଓ କାନରେ ।

୧୨—ଦିନଦିନକୁ—ଦିନକୁଦିନ । ଦୀନ—ଦୁଃଖିତ । ଜୀବନ—ପ୍ରାଣ । ନିରତେ—ସର୍ବଦା । ବ୍ୟାକୁଳକୂଳ—ଆକୁଳତା ସମୂହ । ଜୀବ—ପ୍ରାଣ । ସୁଲକ୍ଷଣୀ—ଲକ୍ଷଣବତୀ, ଶ୍ରୀରାଧା । ବିକଳ—କଳ-ବିକଳ ଧ୍ୱନି ।

୧୩—ଭାବ—ଭବିଷ୍ୟତକୁ । ଭାବିନୀ କରମେ—ସ୍ତ୍ରୀ, ଶ୍ରୀରାଧାଙ୍କର କପାଳରେ । ଭରମେ—ଭୁଲରେ । ବିଧି—ବିଧାତା । ବିଧି—ବିଧାନ କରି । ପ୍ରିୟ ପ୍ରିୟ—ପତିପ୍ରୀତି । ବିରହୀ—ବିଯୋଗିନୀ ।

୧୪—ପାଞ୍ଚ—ବିଚାର କର । କତ—କଅଣ । କତବ—କପଟ । ନାରୀର ଦ୍ୱେଷୀ—ସ୍ତ୍ରୀର ବିରୋଧୀ । କାହିଁରୁ ରୁଷି—କେଉଁ ହେତୁରୁ କ୍ରୁଦ୍ଧ ହୋଇ । ଋଷି—ମୁନି । ବିଦେଶୀ—ବିଦେଶୀୟ । ଆଗତ—ଆସିଅଛନ୍ତି ।

୧୫—ଶୂର—ବୀର । ସୁର—ଦେବତା । ଅସୁର—ଧେନାକ—ପ୍ରାଣର ଗ୍ରହଣକାରୀ ଅର୍ଥାତ୍ ପ୍ରାଣନାଶକ । ଅସୁର—ରାକ୍ଷସ । ନାଗ କିନ୍ନର ନର—ସର୍ପ, କିଂପୁରୁଷ, ମନୁଷ୍ୟ । ଆଲୋକ—ଦର୍ଶନ । ଅସାରସାର—ମନ୍ଦ ଓ ଭଲ ।

୧୬—ସଖୀ ସଙ୍ଗତେ—ସଖୀମାନଙ୍କ ସାଙ୍ଗରେ । ପ୍ରସନ୍ନମୁଖୀଙ୍କ—ସହର୍ଷମୁଖୀ; ଶ୍ରୀରାଧାଙ୍କୁ । ଧରମଭରସା ଧର—ଧର୍ମକୁ ଆଶ୍ରୟ କର । ନିକଟେ—ଅଳ୍ପକାଳରେ । ସୁରସାଳସା—ହେ ରସବତୀ ! ଶିବ—ମହାଦେବ । ଶିବ—ମଙ୍ଗଳ ।

ଆଜ ଆଜନ୍ମସୁଖି-ରେ ଅଇଲେ ଦେଖି ରେ ଯୋଗ୍ୟ ହେଲେ କାଲ୍ଲ ବର ବର
ଭୁଲା ଭୁଲାଅଙ୍ଗୀ ରଙ୍ଗ ହେଲ୍ଲନ କୁରଙ୍ଗନୟନା କାନ୍ଦ ନିବାର ବାର ।୧୭।
ମହ ମହତ୍ତ୍ୱ ଭଙ୍ଗିବା ଉପାୟେ ଲଗିବା ମାନ ଆମ୍ଭ ସରସ୍ୱତୀ ସତ ।
ବଚ ବଞ୍ଚନା ଆଳୀର ଶ୍ରବଣେ ବାଳୀର ଧୀ ସରେ ସ୍ମରେ ବିପତ-ପତ ।୧୮।
କର କରମରେ ମାଣ ନରେନ୍ଦ୍ରକୁମାରୀ ବୋଲେ ରେ କାମ ପାମର ମର ।
ପର ପରବଶ ଜନେ କରୁ, କ ଅର୍ଜନେ ଗର୍ଜି ପ୍ରହାରୁ ଅସର ଶର ।୧୯।
କହିଲେ ଗୁଣି ଗୁଣୀମଣି ଧୀରେ ଅଧୀରେ ସହି ସହିଲ୍ଲ ଗୁମାନ ମାନ ।
ଧିକ ଧିକ ମୁଁ ବରଣ୍ଣ ତିନ ପୁଂସେ ରତ ହେବାର କଲ ନିଦାନ ଦାନ ॥
କାମୀ କାମିନୀ ଗଣିତ ହୋଇଲ ପୁଣି ତ ପୋଡ଼ ହେବାର ରମଣୀମଣି ।
ସତ୍ତୁ ସରୂପ କହୁଛୁ କଳଙ୍କ ରହୁଛୁ ବେଗେ ପକାଅ ମିହାଣି ହାଣି । ୨୧ ।

---

୧୭—ଆଜନ୍ମସୁଖୀରେ—କୃଷ୍ଣଚନ୍ଦ୍ରଙ୍କ, ବା ରେ ରେ ଆଜନ୍ମସୁଖି—ରାଧା । ଯୋଗ୍ୟ ଅନୁରୂପ ବର—ପତିକୁ । ବର—ବରଣ କର । ଭୁଲାଭୁଲା ଅଙ୍ଗୀ—ହେ ଭୁଲାଭୁଲ୍ଲଦେହା । କୁରଙ୍ଗନୟନା—ମୃଗର ପରି ଆଖି ଯାହାର । ନିବାର—ନିବାରଣ କର । ବାର—ଜଳ ଅର୍ଥାତ୍ ଲୁହ । ରଙ୍ଗ ହେଲ୍ଲଣି—ଆଖି ଲାଲ ହେଲଣି (ଏଠାରେ ଆଖି ଆଣିବାକୁ ହେବ) ।

୧୮—ମହ—ତେଜ ଅର୍ଥାତ୍ ଟେକ । ମହତ୍ତ୍ୱ—ଗୌରବ । ମାନ—ପାଳନ କର । ସରସ୍ୱତୀ—ବଚନ । ସତୀ—ହେ ପତିବ୍ରତେ । ବଚବଞ୍ଚନା—ଠକବା କଥା । ଆଳୀର—ସଖୀର । ଶ୍ରବଣେ—ଶୁଣିବାଦ୍ୱାରା । ବାଳୀର—ବାଳା, ଶ୍ରୀରାଧାଙ୍କର । ଧୀ—ବୁଦ୍ଧି । ସରେ—ଶେଷ ହେଲା । ସ୍ମରେ—ସ୍ମରଣ କଲା । ବିପତ-ପତ—ପକ୍ଷୀମାନଙ୍କର ପତି ଗରୁଡ଼, ତାର ପତି ବିଷ୍ଣୁଙ୍କୁ ।

୧୯—ନରେନ୍ଦ୍ରକୁମାରୀ—ବୃଷଭାନୁ ରାଜକନ୍ୟା । ପାମର କାମ—ରେ ନୀଚ କନ୍ଦର୍ପ । ପର—ଶତ୍ରୁ । ପରବଶଜନେ ପରାଧୀନ ଲୋକକୁ । କ ଅର୍ଜନେ—କଅଣ ପାଇବାକୁ । ଅସର—ଅସରନ୍ତା ।

୨୦—ଗୁଣି—ବିଚାରି । ଗୁଣୀମଣି— ଗୁଣବତୀ ଶ୍ରେଷ୍ଠା, ଶ୍ରୀରାଧା । ଧୀରେ—ଆସ୍ତେ । ଅଧୀରେ—ଆକୁଳ ହୋଇ । ଗୁମାନମାନ—ଅଭିମାନ ସବୁ । ଧିକ ଧିକ—ଧିକ୍କାର ହେଉ ହେଉ । ବରଣ୍ଣ—ପତିବ୍ରତା । ବା ବରତ (ପାଠରେ) ବ୍ରତ ଥାଉଁ ଥାଉଁ । ତିନ ପୁଂସେ—ତିନିଜଣ ପୁରୁଷକୁ । ନିଦାନ ଦାନ କଲ—ନିଶ୍ଚୟ ଦେଲ ।

ଏକସ୍ୟ ଶ୍ରୁତମେବ ଲୁମ୍ପତି ମତିଂ କୃଷ୍ଣେତି ନାମାକ୍ଷରମ୍
ସାନ୍ଦ୍ରୋନ୍ମାଦପରମ୍ପରାମୁପନୟତ୍ୟନ୍ୟସ୍ୟ ବଂଶୀକଲଃ ॥
ଏଷପି ସ୍ନିଗ୍ଧଘନଦ୍ୟୁତିର୍ମନସି ମେ ଲଗ୍ନଃ ପଟେ ବୀକ୍ଷଣାତ୍
କଷ୍ଟଂ ଧିକ୍ ପୁରୁଷତ୍ରୟେ ରତିରଭୂନ୍ମନ୍ୟେ ମୃତିଂଶ୍ରେୟସୀମ୍ ॥ ବି. ମା.

ଆନ ଆନନ ଗୁହିଁବ କି କରି ସହିବ କେହ୍ବ ଲୋକ ଅପବାଦ ବାଦ ।
ବହି ବହୁଛୁ କପାଳେ ହସିବେ ଗୋପାଳେ ଅରଜିଲ ଏ ଆପଦ ପଦ ।୨୨।
ପର ପରତେ ହେବାର ସେ କି ଲୁଚିବାର କାଲି ଯିବ ତ ଏ ପୁଗ ପୂର
ଆସ ଆସନ୍ତତ ହେଲ, ଲବେ ନୋହେ ହେଳା, ଯିବ ତା ନାମ ସୁମରି ମରି ॥
ଧ୍ରୁବ ଧ୍ରୁବ ଲୋକ ଦଳି ମୋ ନିନ୍ଦାଆବଳି ଗଲେ କି ତାହା ତେଜିବ ଜୀବ ।
ମୂର୍ଚ୍ଛି ମୁଁ ଛୁ କଲେ ତାକୁ ମନ ମମତାକୁ ଛଡ଼ାଇ କି କାମଦେବ ଦେବ ।୨୪।
ଭାବ ଭାବର ମୂରତି ବିନା କି ବରତି ହେବ କଷ୍ଟ ଅକୂପାର ପାର ।
କର, କର ମୁଁ ଧରୁଛୁ, ଉପାୟ ସରୁଛୁ ରାଧା ନା, କୃପା ବିସ୍ତାର, ତାର ॥
ସଙ୍ଗୀ ସଙ୍ଗୀତପଣ୍ଡିତା ଜଗତମଣ୍ଡିତା ବାଣୀ ଶ୍ରବଣେ ଦୁଃଖରେ ଖରେ ।
ବାଚ ବାଚକ ହୋଇଲେ ସ୍ୱରୂପ ବୋଇଲେ ଚିତ୍ତ ନ ମଜା ଆତୁରେ ତୁରେ ॥
ନାଗ ନାଗର ସେ ଏକ ତ୍ରୈଣାୟ ନାୟକ ଭ୍ରମ ତେଜ ସେ ନନ୍ଦନନ୍ଦନ ।
ବର ବରଜରମଣୀଙ୍କର ହୃଦମଣି ସେ କାମୀ ଚିତ୍ତଜୀବନ ବନ ।୨୭।

---

୨୧—କାମିକାମିନୀ—କାମୁକା ସ୍ତ୍ରୀ । ଗଣିତ—ଗଣି । ରମଣୀମଣୀ—ସ୍ତ୍ରୀଶ୍ରେଷ୍ଠା । ସରୂପ ସରୁ—ମୂର୍ତ୍ତି ନଷ୍ଟ ହେଉ ଅର୍ଥାତ୍ ମୁଁ ମରେ । କଳଙ୍କ—ଅପବାଦ । ସିହାଣି—ହେ ଚତୁରି !

୨୨—କେହ୍ବ—କପରି । ଲୋକଅପବାଦ ବାଦ—ଲୋକନିନ୍ଦା ପ୍ରବାଦ । ଆପଦପଦ—ବିପତ୍ତିର ସ୍ଥାନ ।

୨୩—ପର ପରତେ ହେବାର—ପର ପୁରୁଷ ସହିତ ପରିଚୟ ହେବା କଥା । ପୁଗ—ନଗର । ପୂର ଯିବ—ପୂର୍ଣ୍ଣ ହେବ । ଅସନ୍ତତ—ସବୁ ପ୍ରକାରେ ବା ସର୍ବଦା । ଲବେ—ଅଳ୍ପ ।

୨୪—ଧ୍ରୁବ—ନିଶ୍ଚୟ । ଦଳି—ଅତିକ୍ରମ କରି । ନିନ୍ଦାଆବଳୀ—ଅପବାଦସବୁ । ଜୀବ—ପ୍ରାଣ । ତାହା—ସେ ଶ୍ରୀକୃଷ୍ଣ ପ୍ରେମ । ମୁ ତାକୁ (ସେହି ଶ୍ରୀକୃଷ୍ଣ ପ୍ରେମକୁ) ମୂର୍ଚ୍ଛି—ଗାଢ଼କରି ଛୁ କଲେ ସୁଦ୍ଧା କାମଦେବ—କନ୍ଦର୍ପ, ମନର ମମତାକୁ—ଆଗ୍ରହକୁ, ଛଡ଼ାଇ ଦେବ କି ? ଅର୍ଥାତ୍ ଦେବ ନାହିଁ ।

୨୫—ଭାବ—ଜାଣ ଭାବର ମୂରତି—ପ୍ରେମମୟ ମୂର୍ତ୍ତି, ବା ଭା—କାନ୍ତିରେ ବର ଉତ୍କୃଷ୍ଟ ମୂର୍ତ୍ତି, ଶ୍ରୀକୃଷ୍ଣ । କି ବରତି—ବଞ୍ଚିବ କି ? କଷ୍ଟ ଅକୂପାର—କ୍ଳେଶସମୁଦ୍ର । ପାର—ପାରି । ଉପାୟ କର । ବିସ୍ତାର—ପ୍ରକାଶ କର । ତାର ଉଦ୍ଧାର କର ।

୨୬—ସଙ୍ଗୀତ ପଣ୍ଡିତା—ଜ୍ଞାନନିପୁଣା । ଜଗତମଣ୍ଡିତା—ସଂସାରର ଅଳଙ୍କାର ସ୍ୱରୂପା ଶ୍ରୀରାଧାଙ୍କର । ଖରେ—ବେଗରେ । ବାଚ—ବାଚକ ହୋଇଲେ —ବଚନ କହିଲେ । ସ୍ୱରୂପ—ସତ୍ୟ, ଉଚିତ । ଆତୁରେ—ଉତ୍କଣ୍ଠାରେ ।

୨୭—ନାଗ ନାଗର—ନାଗର ନାଗ—ରସିକଶ୍ରେଷ୍ଠ । ତ୍ରୈଣାୟ ନାୟକ—ହଂସ; ତିନିଜଣ ନାୟକ । ବର ବରଜରମଣୀଙ୍କର—ଉତ୍କୃଷ୍ଟ ଗୋପ ସ୍ତ୍ରୀମାନ-

ସୁଧା ସୁଧାର ଉତ୍ତର ଶ୍ରବଣେ ମିତର ବଢ଼ିଲ ରାଧା-ଆନନ୍ଦ ନଦ ।
ଶତ ଶଶଧରବତ ସେ ବାଣୀ ଜୀବ ତ ମଣିବାରୁ ଧୀ-କୁମୁଦ ମୁଦ ।୨୮।
ବିଦୁ୍ୟ ବିଦ୍ୟୁତ ଗଉରୀ ସୁକର ଭଉଁରୀ ଭାବ ସାମନ୍ତର୍ଗ ହାର ହାର ।
ପ୍ରାନ୍ତ ପ୍ରାନ୍ତ ଆଦ୍ୟନ୍ତର ଯମକ ଗୀତର ମର୍ମଜ୍ଞ ବିନା ଜଡ଼ର ଡର ।୨୯।

---

## ଚତୁର୍ବିଂଶ ଛାନ୍ଦ

ଶ୍ରୀରାଧାଠାରେ ଦୂତୀ ଉକ୍ତି । ଆଦ୍ୟବର୍ଣ୍ଣାନୁପ୍ରାସ

ରାଗ—କଲ୍ୟାଣଆହାରୀ

ରସିକେ ରସବତୀରସ ରସିଣ ଶ୍ରବଣ କର ଦେଇ ମତି ।
ରସାଳସା ଯୋଷା ଦଶା ଦେଖି ସଖୀ ଦୁଃଖିତ କରି ମତି ଅତି । ରସିକା ।
ଉଣରଣ-ଛାପ ନାଶନେ
ଋତୁ ଉଦ୍ଦୀପନ ଶାନ୍ତ ଉପଚାର ପ୍ରଚାର କରନ୍ତି ସଚନେ । ୧ ।

---

ଙ୍କର । ହୃଦମଣୀ—ହୃଦସ୍ବରୂପ । କାମୀ ତପ୍ତଜୀବନବନ—କାମିକାମାନଙ୍କର ପରିତପ୍ତ ପ୍ରାଣର ଜଳ ସ୍ୱରୂପ । "ତା ଶୁଣାନ୍ତୁ ଏକୋନେକବ ଯୋ ଏଷୋ ମହାଣାଅଗ୍ରେକହ୍ଲୋ ।" ଲଳିତା ଓ ବିଶାଖାଙ୍କ ଉକ୍ତି—ବି, ମା ।

୨୮—ସୁଧା ସୁଧାର ଉତ୍ତର ଶ୍ରବଣେ—ଅମୃତ ଧାରା ତୁଲ୍ୟ ଅଥବା ଅମୃତ-ପରି ସରଳ ବଚନ ଶୁଣି । ରାଧା-ଆନନ୍ଦ-ନଦ—ଶ୍ରୀରାଧାଙ୍କର ଆନନ୍ଦ ନଦୀ । ଶତ ଶଶଧରବତ—ଶତ ଶତ ଚନ୍ଦ୍ରପରି । ସେ ବାଣୀ—ସେ ସଖୀ ବଚନ । ଜୀବନ—ଶ୍ରୀରାଧାଙ୍କର ପ୍ରାଣ ପରି । ଧୀକୁମୁଦ ମୁଦ—ମନରୂପକ କଇଁର ଆନନ୍ଦ ହେଲା ।

୨୯—ବିଦୁ୍ୟ—ପଣ୍ଡିତମାନେ । ବିଦ୍ୟୁତ-ଗଉରୀ—ବିଜୁଳିବର୍ଣ୍ଣା । ଅଥବା ବିଦ୍ୟୁ ବିଦ୍ୟୁତ-ଗଉରୀ—ବିଜୁଳିଆଭା—ବିଜୁଳିଆଭା ତୁଲ୍ୟ ବର୍ଣ୍ଣା —ଶ୍ରୀରାଧା । ସୁକର ଭଉଁରୀ—ସହଜ ଭ୍ରମ । ଭାବ—ପ୍ରେମଭକ୍ତି । ହାର—ମାଳାସ୍ୱରୂପ । ପ୍ରାନ୍ତ ଅଦ୍ୟ ଓ ମଧ୍ୟମ ଯମକଯୁକ୍ତ । ଗୀତର, ପ୍ରାନ୍ତ—ଶେଷ, ହେଲା । ମର୍ମଜ୍ଞ—ସାରଜ୍ଞ, ପଣ୍ଡିତ । ଜଡ଼ର—ମୂର୍ଖର ।

---

୧—ରସବତୀରସ—ରସିକା ଶ୍ରୀରାଧାଙ୍କର ଶୃଙ୍ଗାର ରସ ବର୍ଣ୍ଣନା । ରସାଳସା ଯୋଷା ଦଶା—ମଦାଳସୀ, ରସ କ ଶୃଙ୍ଗାର ରସ ତହିଁରେ ଘାରି ହେଉଥିବା ସ୍ତ୍ରୀ ଶ୍ରୀରାଧାଙ୍କର ଅବସ୍ଥା । ରଣରଣ ଛାପ ନାଶନେ—କନ୍ଦର୍ପ ତାପ ଶାନ୍ତ ନିମିତ୍ତ । ଋତୁଉଦ୍ଦୀପନ—ବସନ୍ତ ଋତୁରେ ବଢ଼ୁଥିବା । ଶାନ୍ତ ଉପଚାର—ଶାନ୍ତ ହେବାର ଉପାୟ, ସାମଗ୍ରୀ । ପ୍ରଚାର କଲେ—ବିଧାନ କଲେ ।

ରମଣୀ କେ ପୁଣି ଗୋଳି ଘନସାର ବୋଳି ଦେଉଅଛନ୍ତି ହୃଦରେ ।
ରାଜୀବନାଳ ମାଳ ମାଳ କରି କେ ଲମ୍ବାଇ ଦେଉଛନ୍ତି ଗଳାରେ । ରସିକା ।
ରତନ ଯତନ ପାଇଁକି ।
ରଚେ କେ ଶତ ଶତଦଳତଳପ ନୟନେ ଥକାଇ ପାଣିକି । ୨ ।
ରାମା କେ ଉଷୀର ବାଟୁଛନ୍ତି, ଛାଟୁଛନ୍ତି ବାତାୟନ-ବାଟ-ଫାଟକୁ ।
ରଚନା କେଉଁ ସୁଲୋଚନା କରଇ ଅହିଚନ୍ଦ ବାତ ହତକୁ । ରସିକା ।
ରମ୍ୟ ପାଇଁ କେ ମନେ ଭାଳି ।
ରୁତବନ୍ତ ପରଭୃତକୁ ଲଉଡ଼ି ଘେନି ଦଉଡ଼ି ଦିଏ ଗାଳି । ୩ ।
ରସନିଧିରେ ଏ ବିଧିରେ ବଞ୍ଚାନ୍ତି, ଧୂଞ୍ଚାନ୍ତି ଅଳପ ତାପକୁ ।
ରଜନୀଶ ମୁଖୀ, ସଜନୀ କେ ବୋଲେ, ଅରଜି ଅଛି ଏ ପାପକୁ । ରସିକା ।
ରସଭାବନେ ଅଚେତନା ।
ରହିତ ନୋହେ ତ ସାନ୍ତ୍ୱନା କଲେ ତ ନୂତନା ଅମାପ ବେଦନା । ୪ ।
ରସାମଣ୍ଡନା ଦଣ୍ଡ ନାଶ ଯିବ କି, ଶିବଙ୍କୁ ସେବା କରାଇବା ।
ରୁଚିର ମନ୍ଦାରହାର ନୈଳବଳ ଦେଇ ଶିବାଙ୍କୁ ମନାଇବା । ରସିକା ।
ରାଧା ବାଧା ହିତ ପାଇଁକି ।
ରମାଙ୍କୁ ପୂଜିବା ରଞ୍ଜିବା ଅନେକ ଦେଇ ହେମପଦ୍ମ ମାଳିକି । ୫ ।
ରହିଛନ୍ତି ସଖୀ ଏହିପରି କରି ବିଚାର ନିବେଦକୁ ପାଇ ।
ରୂପବନ୍ତୀ କାମସେନୀ ସେହିକାଳେ ପ୍ରବେଶ ହେଲା ତହିଁ ଯାଇ । ରସିକା ।

---

୨—ଘନସାର—କର୍ପୂର, ରାଜୀବନାଳ—ପଦ୍ମନାଡ଼ । ରତନ—ଶ୍ରେଷ୍ଠା ଶ୍ରୀରାଧାଙ୍କ । ଯତନ—ଭଲପାଇଁ । ଶତ ଶତଦଳ ତଳପ—ଅସଂଖ୍ୟ ପଦ୍ମପାଖୁଡ଼ାର ଶେଯ । ନୟନେ ଥକାଇ ପାଣି—ଆଖିରେ ଲୁହ ସମ୍ଭାଳି ନେଇ ।

୩—ରାମା—ସ୍ତ୍ରୀ । ଉଷୀର—ବେଣାଚେର । ବାତାୟନ-ବାଟ-ଫାଟକୁ ଝରକା କଣାକୁ । ଛାଟୁଛନ୍ତି—ବନ୍ଦ କରୁଛନ୍ତି । ସୁଲୋଚନା—ସ୍ତ୍ରୀ । ଅହିଚନ୍ଦ—ସାପର ଚନ୍ଦ । ବାତହତକୁ—ମଳୟ ପବନ ନାଶପାଇଁ (କାରଣ ସାପମାନେ ପବନ ପିଅନ୍ତି) । ରମ୍ୟପାଇଁ—ମନୋରଞ୍ଜନ ପାଇଁ । ରୁତବନ୍ତ ପରଭୃତକୁ—ବୋବାଉଥିବା କୋଇଲିକୁ । ଲଉଡ଼ି—ବାଡ଼ି । ଲ-ଗ୍ରୁ ୨୨-୯ ଦେଖ ।

୪—ରସନିଧିରେ—ରସିକା ଶ୍ରୀରାଧାଙ୍କ । ରଜନୀଶମୁଖୀ—ଚନ୍ଦ୍ରମୁହିଁ । ରସଭାବନେ—ରସକଥା ଭାବିବାରୁ । ଅଚେତନା—ଅଚେତ ହେଲେ । ରହିତ — ବନ୍ଦ । ନୂତନ ଅମାପ ବେଦନା—ନବୀନା ଶ୍ରୀରାଧାଙ୍କର ବେଶୀ ପୀଡ଼ା ।

୫—ରସାମଣ୍ଡନା ଦଣ୍ଡ—ପୃଥିବୀକୁ ମଣ୍ଡିଥିବା ଶ୍ରୀରାଧାଙ୍କର ଦଶା । ରୁଚିର — ସୁନ୍ଦର । ଶିବାଙ୍କୁ—ଦୁର୍ଗାଙ୍କୁ । ରମାଙ୍କୁ—ମହାଲକ୍ଷ୍ମୀଙ୍କୁ । ହେମ—ସୁନା ।

ରସାଣସ୍ୱନ ଦେଖି ଘନେ ।
ରତ୍ତପତ୍ତ ବିନା ନବୀନା-ବେଦନା-କାଶ୍ୱ କେ ଅବନୀ ମଣ୍ଡଳେ । ୬ ।
ରସରାଜ କାର୍ଯ୍ୟ କମଳଜ ଆଜ ସିଦ୍ଧ କରିବ କି ସନ୍ଦେହେଁ ।
ରଖି ଏ ଭାବନା ବୋଲଇ ଅଙ୍ଗନା, କି ବ୍ୟାଧି ରସନିଧି ଦେହେଁ । ରସିକା
ରୂପ ଚ ଦିଶୁଛୁ ବିବର୍ଣ୍ଣ ।
ରଚନାବେଣୀ ବିରହବେଶ ଦେଖି ଧଇର୍ଯ୍ୟ ମୋର ହେଲା ଚୂର୍ଣ୍ଣ । ୭ ।
ରାଜକୁମାରୀ ସୁକୁମାରୀ ରହିଲା ଅଲେଲା କଣୋରାରଚନ ।
ରସ ବାସ ବେଶ ହାସ ମାତ୍ର ରୀତ ଏଣ୍ଟ କାଳରେ ରସେ ମନ । ରସିକା
ରଞ୍ଜନ ନ ପାରିଲ କର ।
ରହି ଏତେ ସହି କ କରୁଛ ଆଜ ବୋଲଅ ପରି ପ୍ରାଣପର । ୮ ।
ରସିବ କହାରେ ଯାହାରେ ତାହାରେ ଅଣାଇବାର କଉଁ ଚନ୍ଦ ।
ରଥାଙ୍ଗଧର ପୁରନ୍ଦର କୁମାର ମାର ସୁର ତ ଅଳ୍ପ ମାନ୍ଦ । ରସିକା ।
ରସିଛୁ କାହାଠାରେ ମନ୍ତ ।
ରେକକଟି କଷ୍ଟୀ ହେବା ଦେଖି ଫାଟି ଯାଉଛି ଚନ୍ଦ୍ରାରେ ମୋ ଚିତ୍ତ । ୯ ।
ରଖିଛ ଅନ୍ତର ମୋତେ କରି ପର, ନ କହ କାହିଁକି ସଜନ ।
ରଜନୀ କାମିନୀକି ଦେଖୁନାହିଁ କି ସାନ୍ଦ୍ର ହରିଇ ଚନ୍ଦ୍ର ଧେନ । ରସିକା ।
ରସଶାସ୍ତ୍ର-ଅବଗାହିନୀ ।
ରହିବ କି କରି ଧଇର୍ଯ୍ୟକୁ ଧରି ରସିକ ବିନା ରସିକନୀ । ୧୦ ।

---

୬—ନବେଦ-ବୁଦ୍ଧିବଣା ହୋଇ । ବୁଯବଲ୍ଲୀ—ଓଡ଼ିଆରେ 'ବଲ୍ଲୀ' ସ୍ଥାନରେ 'ବଲ୍ଲୀ' ହୁଏ । ରସାଣସ୍ୱନ—ଭୂଇଁରେ ଶୋଇବା । ରତ୍ତପତ୍ତ ବିନା —କନ୍ଦର୍ପ ଛଡ଼ା । ନବୀନ-ବେଦନା-କାଶ୍ୱ—ନବସ୍ନୁବତୀ ଶ୍ରୀରାଧାଙ୍କର ପୀଡ଼ା ଦେବା ଲୋକ । ଅବନୀ—ପୃଥିବୀ ।

୭—ରସରାଜ କାର୍ଯ୍ୟ—ଶ୍ରୀକୃଷ୍ଣଙ୍କ କାମ । କମଳଜ—ବିଧାତା । ରଖି— କରି । ଅଙ୍ଗନା—ସ୍ତ୍ରୀ, ଦୂତୀ । ରସନିଧି ଦେହେଁ—ରସିକା ଶ୍ରୀରାଧାଙ୍କର ଶରୀରରେ । ରଚନାବେଣୀ—ରଚନରେ ଶରଧା ଥିବା ରାଧାଙ୍କର ।

୮—ଅଲେଲା—ଗେଲବସର, ସେରନ୍ଧ୍ରୀ । ରସ—ଶୃଙ୍ଗାରରେ । ବାସ —ଲୁଗାରେ । ମାତ୍ର ରୀତ—ଆସ୍ୱର ବ୍ୟବହାରରେ । ରସିକାରଞ୍ଜନ—ଶ୍ରୀରାଧାଙ୍କର ମନ ରଞ୍ଜାଇବା ।

୯—କହାରେ—କେଉଁରେ । ଯାହାରେ—ଯାହାକୁ । ତାହାରେ— ତାହାକୁ । ଚନ୍ଦ—ଆଶ୍ଚର୍ଯ୍ୟ । ରଥାଙ୍ଗଧର—ଚକ୍ରଧର, ବିଷ୍ଣୁ । ପୁରନ୍ଦର—ଇନ୍ଦ୍ର । କୁମାର—କାର୍ତ୍ତିକେୟ । ମାର—କନ୍ଦର୍ପ । ସୁର—ଦେବତା । ରେକକଟି— ରେକାପରି ସରୁ କଟି ଶ୍ରୀରାଧା । କଷ୍ଟୀ—ଦୁଃଖିନୀ ।

ଋଷିରମଣୀ ରସିଲେଟି ଚନ୍ଦ୍ରଙ୍କୁ ସାରସୁନ୍ଦର ଦେଖିକର ।
ରମାପତି ପଦ ତେଜ ଆସି ଗଙ୍ଗା ହୋଇଲେ ଶାନ୍ତନୁ ନାରୀ । ରସିକା ।
ରତି କି ଏମନ୍ତ ପଦାର୍ଥ ।
ରସଜ୍ଞା ହେଲେ ଜାଣିବ ସିନା ତନ୍ତୁଁ ନାହିଁ ଆଉ ପୁରୁଷାର୍ଥ । ।୧୧ ।
ରମ୍ୟଅଙ୍ଗୀ ଅଙ୍ଗୀକାର କଲେ ଭେଟାଇବ ଦବ୍ୟ ସାର ସୁନ୍ଦର ।
ରସରାଜ ଅଙ୍ଗସ୍ଥାନ ସେ ନାଗର ସୁଷମା-ସ୍ୱର୍ଗ-ପୁରନ୍ଦର । ରସିକା ।
ରଚନା ନୋହେ ସେ ବଧିରେ ।
ରସାମୃତ ମୂର୍ତ୍ତି ଏମନ୍ତ ପ୍ରତ୍ୟକ୍ଷ ହେଉଛୁ ମୋହୋର ବୁଦ୍ଧିରେ । ୧୨ ।
ରୂପ ତୁଳନାକୁ ସେହ୍ନ ସେ ତାହାକୁ ସମାନ ନାହିଁ ଆନ କେହ୍ନ ।
ରାତିପତି ମୁଖଖଣ୍ଡିକ ଦେଖିଲେ ଧୂଷର ହଣେ ଲଜ ବହ୍ନ । ରସିକା ।
ରସଧର ଦେଖି କାନ୍ତିକ ।
ରଖି ପାରଇ ନାହିଁ ନିଜ ଶରୀର ବହେ ଆନ ଆନ ରୀତିକ । ୧୩ ।
ରୁଚିର ଚରଣତଳକୁ ତୁଳକୁ ଜବା କରିବା ଅନୁଚିତ ।
ରଙ୍ଗ ରାଜୀବପତ୍ର ନେତ୍ର ବୋଇଲେ ପବିତ୍ର ହୋଇଯିବ ସେ ତ । ରସିକା ।
ରାଗ ଅନୁରାଗ ମିଶିବ ।
ରକ୍ତ ବ୍ୟକ୍ତ ଓଷ୍ଠ ପୃଷ୍ଠ ଉପମିତ ହେବାକୁ ତେବେ ବା ଆସିବ । ୧୪ ।

---

୧୦—ଅନ୍ତର—ଭେଦ । ରଜନୀ—ରାତି ରୂପ ନାରୀ । ସାନ୍ଦ୍ର—ଶୋଭାରେ ଧୂର୍ତ୍ତ । ରସଶାସ୍ତ୍ର ଅବଗାହନୀ—କାମ ଶାସ୍ତ୍ର ଜାଣନ୍ତି ।

୧୧—ଋଷି ରମଣୀ—ବୃହସ୍ପତିଙ୍କ ସ୍ତ୍ରୀ ତାରା । ସାର—ଅତି ସୁନ୍ଦର । ତାରା ବୃହସ୍ପତିଙ୍କର ସ୍ତ୍ରୀ । ସେ ଚନ୍ଦ୍ରଙ୍କୁ ସୁନ୍ଦର ଦେଖି ତାଙ୍କଠାରେ ପ୍ରୀତି କରିଥିଲେ । ରମାପତି ପଦ—ବିଷ୍ଣୁଙ୍କର ପାଦ ବା ଆକାଶ । ଶାନ୍ତନୁ ନାରୀ—ଭୀଷ୍ମଙ୍କର ପିତା ଶାନ୍ତନୁ ରାଜାଙ୍କର ଭାର୍ଯ୍ୟା । ରସଜ୍ଞା—ରସ ଭୋଗ କଲେ । ପୁରୁଷାର୍ଥ—ଧର୍ମ୍ମ, ଅର୍ଥ, କାମ, ମୋକ୍ଷ ।

୧୨—ରମ୍ୟଅଙ୍ଗୀ—ସୁନ୍ଦରୀ ଶ୍ରୀରାଧା । ସେ ନାଗର ରସରାଜ—ରସମୟ । ଅଙ୍ଗସ୍ଥାନ—କନ୍ଦର୍ପ କିଂବା ଅଭ୍ୟାଗତ କିଂବା ଅଙ୍ଗସ୍ଥାନ ପଢ଼ିଲେ ଦୋଷସ୍ଥାନ । ସୁଷମା-ସ୍ୱର୍ଗ-ପୁରନ୍ଦର—ସୌନ୍ଦର୍ଯ୍ୟ ସ୍ୱର୍ଗର ଇନ୍ଦ୍ର । ବଧିରେ—ବିଧାତା ଦ୍ୱାରା । ରସାମୃତ ମୂର୍ତ୍ତି—ରସ ରୂପ ଅମୃତରେ ଗଢ଼ା—ପ୍ରେମମୟ । ପ୍ରତ୍ୟକ୍ଷ—ବୋଧହୁଏ ।

୧୩—ରାତିପତି—ଚନ୍ଦ୍ର । ମୁଖଖଣ୍ଡିକ—ମୁଖର ଶେ ଭାଗ । ଧୂଷର—ମାଟିଆ । ରସଧର—ଜଳଧର (ମେଘ) । କାନ୍ତି—(ଶ୍ରୀକୃଷ୍ଣଙ୍କର) ଶରୀରର ବର୍ଣ୍ଣ । ଆନଆନ ରୀତି—ଅନେକ ଅନେକ ରୂପ ।

୧୪—ଜବା—ମନ୍ଦାର ଫୁଲ । ତୁଳକୁ—ତୁଳନା । ରଙ୍ଗ-ରାଜୀବପତ୍ର ନେତ୍ର—ରକ୍ତପଦ୍ମପତ୍ର ପରି ଓ ଲାଲବର୍ଣ୍ଣ ନୟନ । ରକ୍ତପଦ୍ମ ପବିତ୍ର ହେବ । ରାଗ

ସାତ ମାନ୍ତ ଶୋଭା ଶେଷ ଗଣେଶରେ ଶେଷ ତ ନୋହିବ କହିଲେ ।
ରସବତୀ ପ୍ରୀତ ପାଇଁ ଅନୁରୂପ ସେହି କେବଳ ରବତଳେ । ରସିକା ।
ସାଧୁକୁ ସୁଧା-ଭୋଗ ପରି ।
ରସନା ଆଜ ସାର୍ଥ ହେଲା ମୋହୋର ତା ଶୋଭା-ସାନ୍ତ କହି କରି ।୧୫।
ରାମାସଖୀଶ୍ରେଣୀ ଦୂତୀବାଣୀ ଶୁଣି ଆନନ୍ଦମନେ ପଚାରିଲେ ।
ରୁଦ୍ରଭବ ସେ କି ମନୁଷ୍ୟ, କଉଁ ଦେଶ, ଜନମ କଉଁ ରାଜକୁଳେ । ରସିକା ।
ରସିକାକୁ ଯୋଗ୍ୟ ହେବ ନା ।
ରସଲତା-ଚିତ୍ତ-ଚାତକକୁ ଘନ-ଗର୍ଜନ ଶୁଣାଇଲୁ ସିନା । ୧୬ ।
ରାମଅନୁଜ ନନ୍ଦରାଜାନନ୍ଦନ ଜଗବନ୍ଦନ, ଦୂତୀ କହେ ।
ରଙ୍କ ରତନ ଆଚ୍ଛନ୍ନ ଯତନରେ କରଇ ପାଇଲେ ଆଗ୍ରହେ । ରସିକା ।
ରଖି ସେବ ଧୀରେ ବଧିରେ ।
ରୁଷ୍ଟ କରି ରାଧା ଦୂତୀକି ବୋଇଲେ, ସବୁ ହୋଇପାରେ ବଧିରେ ।୧୭।
ରସା ଉଲଟିବ, କମଳ ଫୁଟିବ ଯଦ୍ୟପି ପର୍ବତ ଶିଖରେ ।
ରନ୍ଧିବ ବିରଞ୍ଚି ଆକାଶେ ସୁମନ, ମେରୁହିଁ ଚଳିବ ପ୍ରଖରେ । ରସିକା ।
ରବି ପଶ୍ଚିମେ ଉଦେ ହେଲେ ।
ରାଧା ପତିବ୍ରତା-ବ୍ରତ ଅଚଳ କେ ଟାଳିଲେ ଟଳେ ନାହିଁ ତଳେ । ୧୮ ।

---

—ସ୍ନେହ । ଅନୁରାଗ—ପ୍ରେମ । ରକ୍ତବ୍ୟକ୍ତ—ଲାଲବର୍ଣ୍ଣ ହୋଇଥିବା । ଓଷ୍ଠପୃଷ୍ଠ —ଓଠର ଉପର । ଉପମିତ—ସଦୃଶ ।

୧୫—ଶେଷଗଣେଶରେ—ବାସୁକି ଓ ଗଣେଶଙ୍କଦ୍ୱାରା । ଶେଷ—ସମାପ୍ତ । ରସବତୀପ୍ରୀତପାଇଁ—ରସିକା ଶ୍ରୀରାଧାଙ୍କର ପ୍ରୀତ କରିବାକୁ । ଅନୁରୂପ—ଯୋଗ୍ୟ । ରବତଳେ—ପୃଥିବୀରେ । ସାଧୁ ଅସୁର ହୋଇ ସୁଧା (ଅମୃତ) ଭୋଗ କଲା ପରି ଆଜ ମୋର ରସନା (ଜିଭ) ତା ଶୋଭା—ସାନ୍ତ (ସେହି ଶ୍ରୀକୃଷ୍ଣଙ୍କର ସୌନ୍ଦର୍ଯ୍ୟ-ପ୍ରକାର) କହି କରି ସାର୍ଥ—ସଫଳ, ହେଲା ।

୧୬—ରାମା—ଶ୍ରୀରାଧାଙ୍କର । ସଖୀଶ୍ରେଣୀ—ସଖୀମାନେ । ରୁଦ୍ରଭବ—ଦେବତା । ରସଲତା—ରସମୟୀ ଶ୍ରୀରାଧାଙ୍କର । ଚିତ୍ତଚାତକକୁ—ମନରୂପ ଚାତକ ପକ୍ଷୀକୁ । ଘନ-ଗର୍ଜନ— ମେଘ ଘଡ଼ଘଡ଼ି ।

୧୭—ରାମ—ଅନୁଜ—ବଳଦେବଙ୍କର ସାନ ଭାଇ । ଯେପରି ରଙ୍କ ରତ୍ନ ପାଇଲେ ଯତ୍ନ ଓ ଆଗ୍ରହରେ ଆଚ୍ଛନ୍ନ କରେ—ଘୋଡ଼େଇ ରଖେ, ସେହିପରି ରସିକା ରାଧା ଶ୍ରୀକୃଷ୍ଣଙ୍କୁ ଧୀରେ (ମନରେ) ରଖି ବିଧିପୂର୍ବକ ସେବା କରି ରୁଷ୍ଟ —କ୍ରୋଧ, ପ୍ରକାଶ କରି ଦୂତୀକି କହିଲେ । ବଧିରେ—ଦେବଦ୍ୱାରା ।

୧୮—ରସା—ପୃଥିବୀ । କମଳ—ପଦ୍ମ । ବିରଞ୍ଚି—ବିଧାତା । ରନ୍ଧିବ—ଗଢ଼ିବ, ଖୋଜିବ । ସୁମନ—ଫୁଲ । ପ୍ରଖରେ—ବେଗରେ । ରବି—ସୂର୍ଯ୍ୟ ।

ରହିନା ମୋ ଆଗେ ଯା ଯା ବେଗେ ବେଗେ, ପାପ ଘୋଟିବ ତୋ ବଚନେ ।
ରାମନୟନା ରାମ ରାମ ସୁମରି ଅଙ୍ଗୁଳି ଦେଲେ ଦୁଇ କାନେ । ରସିକା ।
ରୋଷ ଶୁଣି ଦୂତୀ ଚଳିଲା ।
ରୁରୁନୟନାର ଧଇର୍ଯ୍ୟ ଗାମ୍ଭୀର୍ଯ୍ୟ ବ୍ୟାଜ ଗୁଣ ବୋଲି ଜାଣିଲା । ୧୯ ।
ଋକ ସାମ ଯଜୁ ଅର୍ଥର୍ବ ବେଦରେ ମହିମା ଯାର ଅଗୋଚର ।
ରସେଶ୍ୱରୀ ପ୍ରେମରସ ଇଚ୍ଛା କରି ଅଧୀର ବର୍ଦ୍ଧନ ତାହାର । ରସିକେ ।
ରାଧିକା ରାଗସାର ମୂର୍ତ୍ତି ।
ରହୁ ଅଭିମନ୍ୟୁ ସାମନ୍ତସିଂହାର ମତି ସେ ରସେ ହବା ରତି । ୨୦ ।

---

## ପଞ୍ଚବିଂଶ ଛାନ୍ଦ

## କୃଷ୍ଣଛାମୁରେ ଦୂତୀ କଥନ

ରାଗ—କୌଶିକ—ପ୍ରାନ୍ତାନୁପ୍ରାସ

ରସିକେ ଦୃଷ୍ଟିବିଳମ୍ବରୁ ଗୋବିନ୍ଦତନୁ ଅବଶ ହୋଇଲାନି ।
ଦୁରି ଦୁର୍ଲ୍ଲଭ ଦୁନ୍ଦୁଭି ଦୁ ପୂର୍ବାଦି ଭାଷାରେ ଆଶା ହୋଇଲାନି । ସେହିକାଳକୁ
ଦୂତୀ ସେଠାକୁ ଅଇଲାନି ।
ତା କଥନମୁଖ ଦେଖି ହରିହୃଦେ ଆନନ୍ଦଚନ୍ଦ୍ର ଉଇଁଲାନି । ୧ ।

---

ଅସମ୍ଭବ ସମ୍ଭବ ହେବ କିନ୍ତୁ ରାଧାଙ୍କର ପତିବ୍ରତାବ୍ରତ ରୂପକ ପର୍ବତକୁ କେହି ଟାଳିଲେ ଟଳେ ମାତ୍ର ଟଳିବ ନାହିଁ।

୧୯—ରାମନୟନା—ମୃଗନେତ୍ରୀ ଶ୍ରୀରାଧା । ଅଙ୍ଗୁଳି—ଆଙ୍ଗୁଠି । ରୋଷ—କ୍ରୋଧ । ରୁରୁନୟନାର—ମୃଗନେତ୍ରୀ ଶ୍ରୀରାଧାଙ୍କର । ଗାମ୍ଭୀର୍ଯ୍ୟ-ଗମ୍ଭୀରପଣିଆ । ବ୍ୟାଜ—ଛଳ ବା କପଟ ।

୨୦—ଯାର—ଯେଉଁ ଶ୍ରୀକୃଷ୍ଣଙ୍କର, ମହିମା ଗୁଣ ବେଦରେ ଅଗୋଚର ଅଟେ । ସେହି ଶ୍ରୀକୃଷ୍ଣଙ୍କର ରସେଶ୍ୱରୀ (ଶ୍ରୀରାଧାଙ୍କ) ପ୍ରେମରସ ଇଚ୍ଛାରେ । ଅଧୀର ବର୍ଦ୍ଧନ—ଅଧୈର୍ଯ୍ୟ ବଢ଼ୁଅଛି । ରାଧିକାଙ୍କର ରାଗସାର ମୂର୍ତ୍ତି—ପ୍ରେମମୟ ଦେହ । "ପ୍ରେମସନ୍ତତିଭିରେବ ନିର୍ମମେ ବେଧସା ତୁ ବୃଷଭାନୁନନ୍ଦିନୀମ୍" (ଉ.ନ.), ବା ରାଗସାରମୂର୍ତ୍ତି ଶ୍ରୀକୃଷ୍ଣ ।

---

୧—ତନୁ—ଶରୀର । ଦୁନ୍ଦୁଭି—ବାଦ୍ୟ । ଦୁ ପୂର୍ବାଦି ଭାଷାରେ—'ଦୁ' ଯେଉଁ ଶବ୍ଦର ମୂଳରେ ଅଛି । ଦୂତୀଠାରେ ଅଧିକ ମନ ଥିବାରୁ ସବୁବେଳେ ଦୁ ଦୁ କହୁଅଛନ୍ତି । କଥନ ମୁଖ—ମୁହଁକୁ କହିଲା ଭଳି । ଆନନ୍ଦଚନ୍ଦ୍ର—ହର୍ଷ ରୂପକଚନ୍ଦ୍ର ।

ଦୁଷ୍ଟ ରସେ ହସେ, ଭଣେ ହେ ନାଗର ! ତୁମ୍ଭର ଶୁଭ ଦିଶିଲାଣ ।
କିଶୋରୀରତନେ ଯତନେ ମଦନ କଦନ ଦେଇ ତ୍ରାସିଲାଣ । ନବନାଗରୀ ।
ଶ୍ରୀଅଙ୍ଗେ ଦଶା ଦିଶିଲାଣ ।
ହାସ ରସ ବେଶ ବାସ ଗ୍ରାସ ଆଶ ବିଷ ସମାନ ରସିଲାଣ । ୨ ।
ପ୍ରସ୍ତର ଉପସ୍ତର ଏତେ ବିସ୍ତର, ସରୁଁ ସାରସ ସରିଲାଣ ।
ଦଳତଳପ ନାଳମାଳ ଦେବାରୁ ପ୍ରିୟ କରି ଆଦରିଲାଣ । ନବନାଗରୀ ।
ହା ହା ଶବ୍ଦ ଉଚ୍ଚାରିଲାଣ ।
ଘନସାର ସାର-ସାରସଲପନା ସାର ହିତ ବିସ୍ତରିଲାଣ । ୩ ।
ପ୍ରାତରଜନୀ ରଜନୀଶବଦନୀ ରଜନକରେ ଗଡ଼ିଲାଣ ।
ଆବେଶେ ଏବେ ସେ ଅବଶେଅବେଶେଭୂରେ ପଣତ ପାଡ଼ିଲାଣ । ନବନାଗରୀ
ଶୋକସାଗରେ ବୁଡ଼ିଲାଣ ।
ଜାତବେଦ-ଜାତ-ଯାତନା, ଅତନୁ ସୁତନୁ-ତନୁ ପୋଡ଼ିଲାଣ । ୪ ।
ରଦେ ରଦବାସ ବାସବମୋହିନୀ ତ ମୋ ହିତ ପାଇଁ ଭିଡ଼ିଲାଣ ।
ଅନ୍ତର ଭିତର ଖେଦ ଅତିତର, ଆତୁର ପଙ୍କେ ପଡ଼ିଲାଣ । ନବନାଗରୀ ।

---

୨—କିଶୋରୀରତନେ—ଯୁବତୀଶ୍ରେଷ୍ଠା ଶ୍ରୀରାଧାଙ୍କୁ । ଯତନେ—କୌଶଳରେ । ମଦନ—କନ୍ଦର୍ପ । କଦନ—ପୀଡ଼ା ତ୍ରାସିଲାଣ—ଡରାଇଲାଣି । ଦଶା—ମନଃସଙ୍ଗାଦ ମୂର୍ଚ୍ଛା ପର୍ଯ୍ୟନ୍ତ କନ୍ଦର୍ପର ଦଶଟି ଦଶା । ବାସ—ବସ୍ତ୍ର ବା ସୁଗନ୍ଧ । ଗ୍ରାସ—ଭୋଜନକୁ । ବିଷସମାନ—ବିଷପରି, ଅରୁଚି ଅବସ୍ଥା । ରସିଲାଣ—ମଣିଲାଣି ।

୩—ଉପସ୍ତର—ଶୀତଳ ଚକସ୍ରା । ପ୍ରସ୍ତର—ବିଧାନ ହେଉଅଛି । ଏତେ—ଏହା ଭାବ । ସରୁ—ପୋଖରୀରୁ । ସାରସ—ପଦ୍ମ । ଦଳତଳପ—ପଦ୍ମପାଖୁଡ଼ା ଶେଯ । ନାଳମାଳ—ପଦ୍ମନାଡ଼ର ମାଳା । ପ୍ରିୟ—ସୁଖକର; ଭଲ । ଘନସାର—କର୍ପୂରକୁ । ସାର-ସାରସଲପନା—ଉତ୍କୃଷ୍ଟ ପଦ୍ମମୁଖୀ—ଶ୍ରୀରାଧା । ସାର ହିତ—ଅଧିକ ଉପକାର ।

୪—ପ୍ରାତରଜନୀ—ଦିନରାତି । ରଜନୀଶବଦନୀ—ଚନ୍ଦ୍ରମୁହଁ—ଚନ୍ଦ୍ରମୁଖୀ—ଶ୍ରୀରାଧା । ରଜନକରେ—ଧୂଳିସମୂହରେ । ଆବେଶେ—ଶୃଙ୍ଗାର ଭାବରେ ମଜ୍ଜିବାରୁ । ଅବଶେ—ଅଶକ୍ତ ଭାବରୁ । ଅବେଶେ—ବେଶ ନ ହୋଇ । ଭୂରେ—ଭୂଇଁରେ । ଜାତବେଦ-ଜାତ-ଯାତନା—ଅଗ୍ନିରେ ଦଗ୍ଧ ହେଲେ ଯେପରି ପୀଡ଼ା ସେପରି ପୀଡ଼ା । ଅତନୁ—କନ୍ଦର୍ପ । ସୁତନୁତନୁ—ସୁନ୍ଦରୀ ଶ୍ରୀରାଧାଙ୍କ ଦେହକୁ ।

୫—ରଦେ—ଦାନ୍ତଦ୍ୱାରା । ରଦବାସ—ଓଠକୁ । ବାସବମୋହିନୀ—ଇନ୍ଦ୍ର ମୋହନକାରୀ ଶ୍ରୀରାଧା । ଅନ୍ତରଭିତର—ମନଭିତରେ । ଖେଦ—ଭୟ । ଅତିତର-

ବରନାଗର ଲୋଡ଼ିଲାନ ।
ଲାଜ ଧଇର୍ଯ୍ୟ କୁଳ ଶୀଳ ବିବେକ ଚଢ଼ାଇ ବେକ ମୋଡ଼ିଲାନ । ୫ ।
ଅନେକ-ଦହକ-କନକଗଉରୀ-ତନୁ ଧୂସର ଦିଶିଲାନ ।
ରସାଳସା ରସା ଦରପଣ କରି ଦରପଣରୁ ରସିଲାନ । ନବନାଗରୀ ।
ଶିବ ଶିବ ତ ଘୋଷିଲାନ ।
ଗିରିଦରୀ ସରି ପୁରୀକି ବିସ୍ମରି କରଜେ ମହୀ ଚଷିଲାନ । ୬ ।
ରାମ ଆରାମ ରାମନେତ୍ରୀ ସକାଶୁଁ ମାଳୀ ଭ୍ରାନ୍ତ ତ କାଟିଲାନ ।
ସଜ-ନିକର ସଜନୀଙ୍କର କର ଆଦର ତାର ତୁଟିଲାନ । ନବନାଗରୀ ।
ଖ୍ୟାତି ଗୋପେ ଚହଟିଲାନ ।
ମନ୍ଦ ନଣନ୍ଦ ଦ୍ୱନ୍ଦ୍ୱ କରି ପରିହୁଁ ବ୍ୟାଧି ବିଧିରେ ବଟିଲାନ । ୭ ।
ତା ମନା କାମନା ଶ୍ୟାମା ବେଦନାରୁ ସାମବେଦ ନା ଲୁଚିଲାନ ।
କଞ୍ଜ-ଖଞ୍ଜନଗଞ୍ଜନ ନୟନରୁ ନୀର ନିରତେ ମୁଞ୍ଚିଲାନ । ନବନାଗରୀ ।
ଗଣ୍ଡ ପାଣିରେ ସଞ୍ଚିଲାନ ।
ଚମ୍ପାଗାତ୍ରୀ ସବୁରାତ୍ରୀ ଶିବରାତ୍ରି କରି କାଳକୁ ବଞ୍ଚିଲାନ । ୮ ।

---

ଖୁବ୍ ବେଶୀ । ଆତୁରପଙ୍କେ—ବ୍ୟାକୁଳତାରୂପକ ପଙ୍କରେ । ବରନାଗର—ଉତ୍କୃଷ୍ଟ ବିଳାସୀ ପୁରୁଷ । କୁଳ—ବଂଶ । ଶୀଳ—ଚରିତ୍ର । ବିବେକ—ବିଚାରଶକ୍ତି । ଏ ସମସ୍ତେ ଜାଣି ଚଢ଼ାଇ ( ପକ୍ଷୀ ) ହେଲେଣି, ସେମାନଙ୍କର ବେକ ମୋଡ଼ିଲାଣି ଅର୍ଥାତ୍ ଏହାଙ୍କୁ ସବୁ ଛାଡ଼ିଲାଣି ।

୬—ଅନେକ ଦହକ-କନକଗଉରୀ—ଅନେକ ଥର ଆଉଟା ହେଲା ସୁନା ପରି ଗୋରୀ ଶ୍ରୀରାଧାଙ୍କର । ତନୁ—ଦେହ । ଧୂସର—ପାଉଁଶିଆ । ରସାଳସା—ରସପୂର୍ଣ୍ଣା ଶ୍ରୀରାଧା । ରସା—ପୃଥିବୀକୁ । ଦରପଣ କରି—ଘୃଷି କରି ଅର୍ଥାତ୍ ମୁହଁ ପୋଛି । ଦରପଣରୁ—ଭୟହେତୁରୁ । ଗିରିଦରୀ—ପର୍ବତ ଗୁମ୍ଫା । ପୁରୀକି—ଘରକୁ । କରଜେ—ନଖରେ । ମହୀ—ଭୂମିକୁ ଚଷିଲାଣି ଅର୍ଥାତ୍ ଭୂଇଁରେ ଗାର କାଟିଲାଣି ।

୭—ରାମ ଆରାମ—ମନୋହର ବଗିଚାକୁ । ରାମନେତ୍ରୀ—ମୃଗନୟନା ଶ୍ରୀରାଧାଙ୍କପାଇଁ । ମାଳୀ ଭ୍ରାନ୍ତ—ଭ୍ରାନ୍ତ ହୋଇ, କାଟିଲାଣି । ସଜନିକର—ଅଳଙ୍କାର ସବୁ । ତାର ସଜନୀଙ୍କର—ସଖୀମାନଙ୍କର । କର ଆଦର—ହାତରେ ଧରିବା ଆଗ୍ରହ ତୁଟିଲାଣି । ଗୋପେ—ଗୋପପୁରେ । ମନ୍ଦ—ଦୁଷ୍ଟ । ଦ୍ୱନ୍ଦ୍ୱ—କଳହ । ବ୍ୟାଧିବିଧିରେ—ରୋଗପ୍ରକାରରେ । ବଟିଲାନ—ଭଣ୍ଡିଲାଣି ।

୮—ତା କାମନା ମନା—ଇଚ୍ଛାବନ୍ଦ, ହେବାରୁ । ଶ୍ୟାମାବେଦନାରୁ—ଶ୍ରୀରାଧାଙ୍କର କଷ୍ଟ ହେବାରୁ । ସାମବେଦ—ଗାନ, ର ନା—ନାମ ଲୁଚିଲାଣି । ( ରାଧାଙ୍କର ନାମ ଥିଲା—ଗାନ୍ଧର୍ବିକା ) ତା କାମନା—ସେହି ଗାନ ଇଚ୍ଛା, ମନା ହେଲାଣି । କଞ୍ଜ-ଖଞ୍ଜନଗଞ୍ଜନ ନୟନରୁ—ପଦ୍ମ ଓ ଖୁଣ୍ଟିକାଳିକା ପକ୍ଷୀ ଜିଣା

କଳକଣ୍ଠକଣ୍ଠୀ ପଣତରେ ଗଣ୍ଠି କି ମମତାରେ ପାଡ଼ିଲାଣି ।
ଦୁର୍ଜନ ଜନ କୁବଚନ ରଚନ ଶରକୁ ଶିର ଆଡ଼ିଲାଣି । ନବନାଗରୀ ।
ମନ—ତାପରେ ପଡ଼ିଲାଣି ।
ନତ ପ୍ରାନ୍ତ ପ୍ରୀତିବତୀ ମୂର୍ତ୍ତି ଲତା ବସନ୍ତ ପତ୍ର ଝଡ଼ିଲାଣି । ୯ ।
ସଞ୍ଚ ଘଞ୍ଚ ଉଚ୍ଚ କୁଚପରେ ଧୀରେ ମୁଖଚନ୍ଦ୍ରକୁ ଥୋଇଲାଣି ।
ବନଜନୟନୁଁ ବନ ଘନ ଘନ ମୁଞ୍ଚି ପଟାଳି ଧୋଇଲାଣି । ନବନାଗରୀ ।
ସଖୀ ପଣତ ଧଇଲାଣି ।
"ଯିବ ଜୀବ ଜୀବଧବନବରକୁ, ମୋ ଆଶା ଛାଡ଼" ବୋଇଲାଣି । ୧୦ ।
କାଳୀକି ବଳି ଦେବାରୁ ଛେଳିଆଳି ମେଣ୍ଢାଁ ଶେଷ ହୋଇଲାଣି ।
ମାଳୀ ଆଳି କରେ ଚମ୍ପାମାଳି ଦେଇ ଶୂଳୀ ସେବା କରାଇଲାଣି । ନବନାଗରୀ
ସବୁ ବିଧି କରାଇଲାଣି ।
ଆଶା ଭରସା ରସା ଶୋଷା ନ ଲଭି କର କପାଳେ ମାଇଲାଣି । ୧୧ ।

---

ଆଖିରୁ । ନୀର—ଜଳ ଅର୍ଥାତ୍ ଲୁହ । ନିରନ୍ତେ—ସର୍ବଦା । ଗଣ୍ଡ—ଗାଲ । ପାଣିରେ—ହାତରେ । ସମ୍ଭାଳିଲାଣି—ରଖିଲାଣି । ଚମ୍ପାଗାତ୍ରୀ—ଚମ୍ପାବର୍ଣ୍ଣା-ଶ୍ରୀରାଧା । ଶିବରାତ୍ରି—ଜାଗରଣ କର ।

୯—କଳକଣ୍ଠକଣ୍ଠୀ—କୋକିଳସ୍ୱରୂପିଣୀ—ଶ୍ରୀରାଧା । ମମତାରେ—ଆଗ୍ରହରେ । ଗଣ୍ଠି ପାଡ଼ିଲାଣି—ଗଣ୍ଠି ପକାଇଲାଣି । ଦୁର୍ଜନ ଜନ—ଦୁଷ୍ଟଲୋକମାନଙ୍କର । କୁବଚନ ରଚନ ଶରକୁ—ନିନ୍ଦାବାକ୍ୟ ପ୍ରକାଶରୂପକ କାଣ୍ଡକୁ । ଶିର—ମୁଣ୍ଡ । ଆଡ଼ିଲାଣି—ଦେଲାଣି । ମନତାପ—ମନୋଦୁଃଖ । ନତପ୍ରାନ୍ତ—ପ୍ରାନ୍ତ ହନ । ପ୍ରୀତିବତୀ—ପ୍ରୀତିଯୁକ୍ତା ଶ୍ରୀରାଧାଙ୍କର । ମୂର୍ତ୍ତିଲତା—ଦେହରୂପକ ଲତାର । ବସନ୍ତପତ୍ର—କାନ୍ତିରୂପକ ପତ୍ର ।

୧୦—ସଞ୍ଚ—ସୁନ୍ଦର । ଘଞ୍ଚ—ଘନ । କୁଚ ଉପରେ—ସ୍ତନ ଉପରେ । ଧୀରେ—ସ୍ଥିରଭାବରେ । ମୁଖଚନ୍ଦ୍ରକୁ—ମୁହଁରୂପକ ଚନ୍ଦ୍ରକୁ । ଥୋଇଲାଣି ଅର୍ଥାତ୍ ମୁହଁ ପୋତିଲାଣି । ବନଜନୟନୁଁ—ପଦ୍ମନେତ୍ରରୁ । ବନ—ଜଳ ଅର୍ଥାତ୍ ଲୁହ । ଘନଘନ—ଅବିରଳ । ମୁଞ୍ଚି—ତ୍ୟାଗକରି, ବୁହାଇ । ପତ୍ରାଳି—ଚନ୍ଦନପାଟୀ । ଜୀବ—ପ୍ରାଣ । ଜୀବଧବନବରକୁ—ଯମପୁରକୁ ।

୧୧—କାଳୀକି—କାଳୀଠାକୁରାଣୀଙ୍କୁ । ଛେଳିଆଳି—ଛେଳିସବୁ । ମେଷ—ମେଣ୍ଢା । ମାଳୀ ଆଳି କରେ—ମାଳୀମାନଙ୍କ ହାତରେ । ଶୂଳୀ—ମହାଦେବ । ରସାଶୋଷା—ପୃଥିବୀ ଶୋଷକାରିଣୀ ଶ୍ରୀରାଧା । କପାଳେ—କପାଳରେ, ଲଲାଟରେ । କର—ହାତ ।

